# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**December- 2020**


୭୭ ଭାଗ ୫ମ ସଂଖ୍ୟା ମାର୍ଗଶିର–ପୌଷ ଡିସେମ୍ବର – ୨୦୨୦





ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦ରେ ମୁଦ୍ରିତ ।



ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର–୭୫୧୦୦୧

ଇ–ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪–୨୫୩୦୨୧୧



ପ୍ରତିଖଣ୍ଡ : ଟ. ୫.୦୦

ଡିସେମ୍ବର– ୨୦୨୦








# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି





ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ



# ମହାପ୍ରଭୁଙ୍କ ଦୁର୍ଲଭ ନାଗାର୍ଜୁନ ବେଶ



ପରମ କାରୁଣିକ, ସର୍ବକାରଣ-କାରଣ ମହାପ୍ରଭୁ ଶ୍ରୀଜଗନ୍ନାଥ ଅବ୍ୟକ୍ତ ହୋଇ ମଧ୍ୟ ସେ ଦାରୁ ସ୍ୱରୂପରେ କମ୍ବୁକଟକ ନୀଳାଚଳ ଧାମରେ ଅଭିବ୍ୟକ୍ତ । ସେ ସର୍ବବ୍ୟାପୀ, ସର୍ବଭୂତାନ୍ତରାତ୍ମା, କର୍ମାଧ୍ୟକ୍ଷ, ଗତି, କର୍ତ୍ତା ଓ ସାକ୍ଷୀ ଅଟନ୍ତି । ଲୀଳାମୟ ସ୍ୱୟମ୍ଭୂଭଗବାନ୍ ଶ୍ରୀଜଗନ୍ନାଥ ହିଁ ଲୀଳା ରୂପ ଅଟନ୍ତି । ତାଙ୍କର ଦ୍ରବ୍ୟ, କର୍ମ ଏବଂ ଗୁଣ ଦ୍ୱାରା ହିଁ ଲୀଳାର ପ୍ରଦର୍ଶନ ହୁଏ । ନିଜ ନିଜ ଭାବନା ଅନୁସାରେ କେହି ସଗୁଣରେ କେହି ନିର୍ଗୁଣରେ ପ୍ରଭୁଙ୍କର ଦିବ୍ୟଲୀଳାର ସଂଦର୍ଶନ କରନ୍ତି । ଶାସ୍ତ୍ରର ଉଲ୍ଲେଖ ପ୍ରକାରେ ଶ୍ରୀବିଷ୍ଣୁ ଅଳଙ୍କାର ପ୍ରିୟ ଅଟନ୍ତି । ତଦନୁସାରେ ମହାବିଷ୍ଣୁ ଶ୍ରୀଜଗନ୍ନାଥଙ୍କୁ ବିଭିନ୍ନ ଅଳଙ୍କାରରେ ମଣ୍ଡିତ କରାଯାଇ ବେଶ କରାଯାଏ । ପରମ୍ପରା ଅନୁଯାୟୀ ସିଂହାରୀ ପୁଷ୍ପାଳକ ସେବକମାନେ ମହାବିଷ୍ଣୁ ସ୍ୱରୂପ ଶ୍ରୀଜଗନ୍ନାଥଙ୍କୁ ବିଭିନ୍ନ ପୁଷ୍ପ, ସ୍ୱର୍ଣ୍ଣ, ବସ୍ତ୍ର, ସୋଲ, ଜରି ଜମୁରା ଇତ୍ୟାଦି ଅଳଙ୍କାର ଉପକରଣରେ ମଣ୍ଡିତ କରାଇ ବେଶ କରିଥାନ୍ତି । ଶୃଙ୍ଗାର ଶବ୍ଦର ଅର୍ଥ ହେଉଛି 'ଅଳଙ୍କରଣ' । ସାଧାରଣତଃ ମଣି, ରତ୍ନ, ସୁବର୍ଣ୍ଣ, ବସ୍ତ୍ର, ସୋଲ, ଜରି ଆଦିରେ ନିର୍ମିତ ବେଶ ଅଳଙ୍କରଣ ବାସି ହୁଏ ନାହିଁ । ସେଗୁଡିକର ବାରମ୍ବାର ପ୍ରୟୋଗ କରାଯାଇପାରେ ।

ମହାପ୍ରଭୁ ଶ୍ରୀଜଗନ୍ନାଥ ସର୍ବରୂପୀ ହୋଇଥିବାରୁ ଏକାଧାରରେ ଶ୍ରୀକୃଷ୍ଣ, ବାମନ, ଶ୍ରୀରାମ, ନୃସିଂହ ଓ ପର୍ଶୁରାମ ଅଟନ୍ତି । ଏଣୁ ତାଙ୍କ ପାଇଁ ବିବିଧ ବେଶର ଆବଶ୍ୟକତା ଅନୁଯାୟୀ ବିଭିନ୍ନ ବେଶ ବ୍ୟବସ୍ଥା ପ୍ରଚଳିତ ହୋଇଛି । ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ର ହସ୍ତପଦ ବିହୀନ ବିଗ୍ରହ ହେଲେ ମଧ୍ୟ, ତାଙ୍କର ବେଶରେ ସ୍ୱର୍ଣ୍ଣ ଶ୍ରୀଭୁଜ, ନଳି, ଶ୍ରୀପୟର, ଶଙ୍ଖ, ଚକ୍ର, ହଳ, ମୂଷଳ ଇତ୍ୟାଦି ଧାରଣ ପୂର୍ବକ ତାଙ୍କୁ ସାକାର ମୂର୍ତ୍ତିରେ ପରିଣତ କରିଦିଆଯାଏ । ଏହି ଦିବ୍ୟ ବେଶମାନ ଭକ୍ତର ମନକୁ ଆମୋଦିତ କରେ । ମହାପ୍ରଭୁଙ୍କର ସମସ୍ତ ନାରାୟଣାତ୍ମକ ବେଶ ରୂପ ପ୍ରାଚୀନ ଉତ୍କଳୀୟ ଚଳଣି ଓ ବେଶଭୂଷା ଦ୍ୱାରା ପ୍ରଭାବିତ ହେବା ଫଳରେ ବାମନ ବେଶ, ରାଧା ଦାମୋଦର ବେଶ, ଲକ୍ଷ୍ମୀ ନାରାୟଣ ବେଶ, କୃଷ୍ଣ ବଳରାମ ବେଶ, ରଘୁନାଥ ବେଶ, ପଦ୍ମ

ବେଶ, ଗଜାନନ ବେଶ, ରାଜବେଶ, ପର୍ଶୁରାମାତ୍ମକ ନାଗାର୍ଜୁନ ବେଶ ପ୍ରଭୃତିର ପ୍ରଚଳନ ହୋଇଛି ।

ଶ୍ରୀଜଗନ୍ନାଥଙ୍କ ଦିବ୍ୟ ବେଶମାନଙ୍କ ମଧ୍ୟରେ ମାନବୀୟ ଚେତନା, ଲୋକ ଶିକ୍ଷା ସହିତ ମହାପ୍ରଭୁଙ୍କର ପରାକାଷ୍ଠା ପ୍ରକାଶ ପାଉଛି । ବିଶେଷତଃ ଗଙ୍ଗବଂଶକାଳୀନ ଶାସନ ସମୟରୁ ଶ୍ରୀମନ୍ଦିରରେ କେତେକ ସ୍ୱତନ୍ତ୍ର ରାଜବେଶର ସୃଷ୍ଟି ହୋଇଥିବା ବେଳେ ସୂର୍ଯ୍ୟବଂଶୀ ଗଜପତି କପିଳେନ୍ଦ୍ର ଦେବ, ପୁରୁଷୋତ୍ତମ ଦେବ, ପ୍ରତାପରୁଦ୍ର ଦେବ ଓ ଭୋଇବଂଶୀୟ ରାଜାମାନଙ୍କ ସମୟରେ ମହାପ୍ରଭୁଙ୍କର କେତେକ ନୂତନ ବେଶର ପ୍ରଚଳନ ହୋଇଥିଲା । ଏହି ବେଶଗୁଡିକ ତାତ୍ତ୍ୱିକ ଓ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ବିଭିନ୍ନ ସମୟରେ ବିଶିଷ୍ଟ ଆଚାର୍ଯ୍ୟ ରାଜା, ଜମିଦାର, ଭକ୍ତ, ମଠାନୁଷ୍ଠାନ ପ୍ରମୁଖ ସେବକମାନଙ୍କ ଉଦ୍ୟମରେ ପ୍ରବର୍ତ୍ତିତ । ଏହିସବୁ ଦିବ୍ୟ ବେଶ ଯୋଗୁଁ ସମଗ୍ର ବିଶ୍ୱରେ ଅଗଣିତ ଜଗନ୍ନାଥପ୍ରେମୀ ଉତ୍କଳଜନଙ୍କ ମନରେ ପ୍ରବଳ ଆନନ୍ଦୋଲ୍ଲାସ ପରିପ୍ରକାଶ ପାଇଥାଏ ।

ପୌରାଣିକ ଦୃଷ୍ଟିକୋଣରୁ ଦେଖିଲେ କାର୍ତ୍ତିକ ମାସ ହିଁ ଭଗବତ୍ ଆରାଧନା ଓ ଉପାସନା ପ୍ରଭୃତି ଦୃଷ୍ଟିରୁ ସର୍ବଶ୍ରେଷ୍ଠ ମାସ ବୋଲି ପ୍ରତିପାଦନ କରାଯାଇଅଛି । ଶ୍ରୀମନ୍ଦିରରେ ମଧ୍ୟ କାର୍ତ୍ତିକ ମାସଟି ଅତ୍ୟନ୍ତ ବିଶେଷତ୍ୱପୂର୍ଣ୍ଣ । ଏହି ମାସରେ ପ୍ରତ୍ୟହ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ବାଳଧୂପ ଓ ରାଧା ଦାମୋଦର ବେଶ ଅନୁଷ୍ଠିତ ହୋଇଥାଏ । ବାସ୍ତବିକ ଆଶ୍ୱିନ ଶୁକ୍ଳ ପକ୍ଷ ଏକାଦଶୀଠାରୁ କାର୍ତ୍ତିକ ପୂର୍ଣ୍ଣିମା ପର୍ଯ୍ୟନ୍ତ ଶ୍ରୀବିଗ୍ରହମାନଙ୍କର ସ୍ୱତନ୍ତ୍ର ବେଶମାନଙ୍କ ମଧ୍ୟରେ ଶୁକ୍ଳ ଏକାଦଶୀରେ ଲକ୍ଷ୍ମୀନାରାୟଣ ବେଶ, ଦ୍ୱାଦଶୀରେ ବାଙ୍କଚୂଡା ବେଶ, ତ୍ରୟୋଦଶୀରେ ତ୍ରିବିକ୍ରମ ବେଶ, ଚତୁର୍ଦ୍ଦଶୀରେ ଲକ୍ଷ୍ମୀନୃସିଂହ ବେଶ ଓ ପୂର୍ଣ୍ଣିମାରେ ରାଜବେଶ ବା ରାଜରାଜେଶ୍ୱର ବେଶ ଅନୁଷ୍ଠିତ ହୋଇଥାଏ । କିନ୍ତୁ ଯେଉଁ ବର୍ଷ କାର୍ତ୍ତିକ ମାସରେ ପଞ୍ଚକ ପାଞ୍ଚଦିନ ନ ହୋଇ ଛଅ ଦିନ ପଡିଥାଏ, ଅର୍ଥାତ୍ କାର୍ତ୍ତିକ ଶୁକ୍ଳ ଏକାଦଶୀଠାରୁ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ପଞ୍ଚକର ଯେଉଁ ତିଥି ମଳ ପଡେ, ସେହି ମଳ ତିଥିରେ ଠାକୁରମାନଙ୍କ ନାଗାର୍ଜୁନ ବେଶ କରାଯାଏ । ସାଧାରଣତଃ ସୂର୍ଯ୍ୟ ଗୋଟିଏ ଦିନ ପରିବର୍ତ୍ତେ ଦୁଇଦିନ ଭୋଗ କଲେ ଅର୍ଥାତ୍ ପୂର୍ବଦିନ ଓ ପରଦିନ ସୂର୍ଯ୍ୟ ଉଦୟ ପର୍ଯ୍ୟନ୍ତ ଗୋଟିଏ ତିଥି ଥିଲେ, ତାହାକୁ ମଳ ତିଥି ବା ବଢା ତିଥି କୁହାଯାଏ । ସେହିପରି ଉଭୟ ଦିନର ସୂର୍ଯ୍ୟୋଦୟ ସମୟକୁ ନଥିଲେ ତାହାକୁ କ୍ଷୟ ତିଥି କୁହାଯାଏ । ସୁତରାଂ ଯେଉଁ ବର୍ଷ କାର୍ତ୍ତିକ ମାସର ପଞ୍ଚକ ମଳତିଥି ବା ୬ ଦିନ ହୁଏ, ସେହିବର୍ଷ ମଳ ତିଥିରେ ଏହି ନାଗାର୍ଜୁନ ବେଶ କରାଯିବାର ପରମ୍ପରା ରହିଛି ।

ଶ୍ରୀମନ୍ଦିରରେ ଅନୁଷ୍ଠିତ ନାଗାର୍ଜୁନ ବେଶର ପୌରାଣିକ ପୃଷ୍ଠଭୂମି ଓ ତାତ୍ପର୍ଯ୍ୟ ସମ୍ପର୍କରେ ଜଣାଯାଏ ଯେ ଯମଦଗ୍ନି ଓ ରେଣୁକାଙ୍କ ଗର୍ଭରୁ ଜାତ ପର୍ଶୁରାମ ଥିଲେ ଜଣେ ପିତୃ ଭକ୍ତ ଓ ପରାକ୍ରମୀ ତପସ୍ୱୀ । ସେ ବିଷ୍ଣୁଙ୍କ ଅଂଶରେ ଜନ୍ମଲାଭ କରିଥିଲେ । ନାଗାରୂପଧାରୀ ପର୍ଶୁରାମ ଥିଲେ ଜଣେ ଅତ୍ୟନ୍ତ ପରାକ୍ରମୀ ଯୋଦ୍ଧା । ସେ ସହସ୍ରାର୍ଜୁନ ନାମକ କ୍ଷତ୍ରିୟ ରାଜାଙ୍କୁ ଯୁଦ୍ଧରେ ପରାସ୍ତ ତଥା ନିହତ କରିଥିଲେ । ବିଷ୍ଣୁଅଂଶୀ ପର୍ଶୁରାମ ସହସ୍ରାର୍ଜୁନଙ୍କୁ କାର୍ତ୍ତିକ ମାସର ମଳ ତିଥିରେ ନିହତ କରି ଧରଣୀରୁ ପାପଭାର ଲାଘବ କରିଥିବାରୁ ପାପପୁଣ୍ୟର ପ୍ରତୀକ ଭାବରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ପର୍ଶୁରାମ ଓ ସହସ୍ରାର୍ଜୁନଙ୍କର ସମନ୍ୱିତ ନାଗାର୍ଜୁନ ବେଶ ହୋଇଥିବା ଅନୁମିତ ହୁଏ । ଅନ୍ୟ ଏକ ପୌରାଣିକ ମତରେ କିରାତରୂପୀ ଶିବଙ୍କ ସହିତ ଅର୍ଜୁନଙ୍କ ଯୁଦ୍ଧ ହେବା ଅବସରରେ ସ୍ୱୟଂ ସଦାଶିବ ଅତ୍ୟନ୍ତ ପ୍ରୀତ ହୋଇ ଅର୍ଜୁନଙ୍କୁ କେତେକ ଦିବ୍ୟ ଅସ୍ତ୍ର ପ୍ରଦାନ କରିଥିବାର ସ୍ମୃତିରେ ନାଗାର୍ଜୁନ ବେଶ ହୋଇଥିବା ଅନୁମାନ କରାଯାଏ । ସେହିପରି ଏହି ବେଶର ସୃଷ୍ଟି ସମ୍ବନ୍ଧରେ ପ୍ରାବନ୍ଧିକ ମହୀମୋହନ ତ୍ରିପାଠୀ ତାଙ୍କ ରଚିତ 'ପ୍ରବନ୍ଧେ ଶ୍ରୀଜଗନ୍ନାଥ' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ଯେ, ଭଗବାନ ପରଶୁରାମ କାର୍ତ୍ତବୀର୍ଯ୍ୟ ବା ସହସ୍ରାର୍ଜୁନ ନାମକ ଜଣେ ପ୍ରବଳ ପରାକ୍ରମୀ କ୍ଷତ୍ରିୟ ରାଜାଙ୍କୁ ହତ୍ୟା କରିଥିଲେ । ବୋଧହୁଏ ନାଗାବେଶଧାରୀ ପର୍ଶୁରାମଙ୍କ

ଦ୍ୱାରା ଅର୍ଜୁନାନ୍ତକ ହେବାରୁ ଉକ୍ତ ବେଶର ନାମ ନାଗାର୍ଜୁନ ହେଲା । ଏତଦ୍‌ଭିନ୍ନ ଅନ୍ୟତମ ପ୍ରାବନ୍ଧିକ ଡକ୍ଟର ଉମେଶ ଚନ୍ଦ୍ର ଚିହ୍ନରାଙ୍କ ମତାନୁଯାୟୀ କାର୍ତ୍ତିକ ମାସ ଶୁକ୍ଳ ପକ୍ଷ ଏକାଦଶୀ ତିଥିଠାରୁ ଅର୍ଜୁନଙ୍କ ପୁତ୍ର ନାଗାର୍ଜୁନ ଏବଂ ଅର୍ଜୁନଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧରେ ଅର୍ଜୁନଙ୍କର ପୁନର୍ଜନ୍ମ ମଳ ତିଥିରେ ହୋଇଥିଲା । ଏଣୁ ଏହାର ସ୍ମାରକୀ ସ୍ୱରୂପ ଯେଉଁ ବର୍ଷ କାର୍ତ୍ତିକ ମାସ ଏକାଦଶୀଠାରୁ ପୂର୍ଣ୍ଣିମା ମଧ୍ୟରେ ଗୋଟିଏ ତିଥି ଦୁଇ ଦିନ ଭୋଗହୁଏ, ସେହିବର୍ଷ ଶ୍ରୀଜଗନ୍ନାଥଙ୍କର ନାଗାର୍ଜୁନ ବେଶ ଅନୁଷ୍ଠିତ ହୋଇଥାଏ । ଶ୍ରୀକ୍ଷେତ୍ରର ବରିଷ୍ଠ ସେବକ ଓ ସ୍ଥାନୀୟ ବାସିନ୍ଦାମାନଙ୍କ ମଧ୍ୟରେ ପ୍ରଚଳିତ ତଥ୍ୟ ଅନୁଯାୟୀ, ପୁରୀରେ ସାହିଯାତ୍ରାର ପ୍ରବର୍ତ୍ତନ ପରେ ଶ୍ରୀମନ୍ଦିରରେ ପଞ୍ଚୁକ ମଳ ତିଥିରେ ଏହି ପର୍ଶୁରାମାତ୍ମକ ବେଶର ପ୍ରଚଳନ ହୋଇଥିଲା । ଏହି ବେଶ ଶୈବ ଓ ବୈଷ୍ଣବୀୟ ଭାବନାର ଏକ ମିଶ୍ରିତ ପରିପ୍ରକାଶ ।

**ବେଶର ପ୍ରାଚୀନତା:** ଶ୍ରୀମନ୍ଦିରରେ ଅନୁଷ୍ଠିତ ନାଗାର୍ଜୁନ ବେଶର ସୃଷ୍ଟି ଓ ପ୍ରାଚୀନତା ନେଇ ଗବେଷକ ତଥା ଆଲୋଚକମାନେ ଭିନ୍ନ ଭିନ୍ନ ମତପୋଷଣ କରନ୍ତି । କେତେକ ଗଙ୍ଗବଂଶକାଳୀନ ରାଜତ୍ୱ ସମୟରୁ ଏହି ବେଶର ପ୍ରଚଳନ ଶ୍ରୀମନ୍ଦିରରେ ହୋଇଥିବା ଉଲ୍ଲେଖ କରିଛନ୍ତି ଯଦିଓ ଏ ସମ୍ପର୍କରେ ନିର୍ଦ୍ଦିଷ୍ଟ ପ୍ରାମାଣିକ ତଥ୍ୟ ଉପଲବ୍ଧ ହେଉନାହିଁ । ତେବେ ବେଶ ସୃଷ୍ଟି ସମ୍ପର୍କରେ ଜଣାଯାଏ ଯେ ୨୫୦ରୁ ୩୦୦ ବର୍ଷର ପ୍ରାଚୀନ ହୋଇଥିବା ଅନୁମିତ ହୁଏ ।

ନାଗାର୍ଜୁନ ବେଶ ଏକ ଯଜମାନୀ ବେଶ ଅଟେ । ପରମ୍ପରା ଅନୁଯାୟୀ ପୁରୀ ହରଚଣ୍ଡୀ ସାହିର ଚକ୍ରକୋଟ ଖୁଣ୍ଟିଆଙ୍କ ବଂଶଧର ପକ୍ଷରୁ ଏହି ବେଶ ସାମଗ୍ରୀ ଯୋଗାଯାଇଥାଏ । ଶ୍ରୀମନ୍ଦିର ରେକର୍ଡ ରୁମ୍‌ରୁ ଉପଲବ୍ଧ ହେଉଥିବା ତଥ୍ୟାନୁଯାୟୀ ଚକ୍ରକୋଟ ଖୁଣ୍ଟିଆଙ୍କ ପରିବାର ପକ୍ଷରୁ ୧୯୬୮ ମସିହା ପର୍ଯ୍ୟନ୍ତ ମହାପ୍ରଭୁଙ୍କର ନାଗାର୍ଜୁନ ବେଶ ଯୋଗାଇ ଆସୁଥିଲେ । ୧୯୬୬ ମସିହା କାର୍ତ୍ତିକ ମାସ ପଞ୍ଚକ ମଳ ତ୍ରୟୋଦଶୀ (ନଭେମ୍ବର ୨୬ ତାରିଖ ୧୯୬୬ ମସିହା), ୧୬.୧୧.୧୯୬୭ ମଳ ଚତୁର୍ଦ୍ଦଶୀ ଓ ୩.୧୧.୧୯୬୮ ମଳ ତ୍ରୟୋଦଶୀ ତିଥିରେ ଶ୍ରୀମନ୍ଦିରରେ ନାଗାର୍ଜୁନ ବେଶ ହୋଇଥିବାର ପ୍ରମାଣ ମିଳୁଛି । ସେସମୟରେ ଲଗାତାର ୩ ବର୍ଷ ଧରି ପଞ୍ଚକରେ ମଳ ତିଥି ପଡିଥିବାରୁ ଚକ୍ରକୋଟ ଜଗନ୍ନାଥ ଖୁଣ୍ଟିଆଙ୍କ ତରଫରୁ ନାଗାର୍ଜୁନ ବେଶ ସାମଗ୍ରୀ ଯୋଗାଯାଇଥିଲା । ଏହାର ୨୭ ବର୍ଷ ପରେ, ଅର୍ଥାତ୍ ତା ୨୬.୧୧.୧୯୯୩ ମଳ ଦ୍ୱାଦଶୀ ତିଥିରେ ନାଗାର୍ଜୁନ ବେଶ ହୋଇଥିଲା । କିନ୍ତୁ ଉକ୍ତ ବର୍ଷ ସେ ବେଶ ସାମଗ୍ରୀ ଯୋଗାଇବାରେ ଅନିଚ୍ଛା ପ୍ରକାଶ କରିବାରେ ଜନୈକ ଦଇତାବଂଶୀୟ ତିଳୋତ୍ତମା ଦାସ ମହାପାତ୍ର ବେଶ ବାବଦ ଖର୍ଚ୍ଚ ଯୋଗାଇ ଦେଇଥିଲେ । ସେହିବର୍ଷ ନୀତି ଓ ବେଶ ସଂପାଦନରେ ଅହେତୁକ ବିଳମ୍ବ ତଥା ଦର୍ଶନାର୍ଥୀମାନଙ୍କ ବେଶ ଦର୍ଶନରେ ବିଶୃଙ୍ଖଳା ପରିଲକ୍ଷିତ ହୋଇଥିଲା । ଏହା ପରେ ପୁନର୍ବାର ୧୯୯୪ ମସିହାରେ ନାଗାର୍ଜୁନ ବେଶ ମଳ ତ୍ରୟୋଦଶୀରେ (ତା ୧୬.୧୧.୧୯୯୪) ମହାପ୍ରଭୁଙ୍କର ନାଗାର୍ଜୁନ ବେଶ ଅନୁଷ୍ଠିତ ହୋଇଥିଲା । ସେ ବର୍ଷ ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ କୌଣସି ଯଜମାନଙ୍କୁ ସୁଯୋଗ ଦିଆନଯାଇ ଷ୍ଟେଟ୍ ତରଫରୁ ବେଶ ନିର୍ମାଣ ବାବଦ ସମସ୍ତ ଆୟୋଜନ କରାଯାଇଥିଲା । ଏତଦ୍‌ବ୍ୟତୀତ ୧୯୯୪ ମସିହାରେ ଉଭୟ ଜିଲ୍ଲା ଓ ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ଏକାଧିକ ବୈଠକ ଅନୁଷ୍ଠିତ ହୋଇ ମହାପ୍ରଭୁଙ୍କ ଏହି ଦୁର୍ଲଭ ନାଗାର୍ଜୁନ ବେଶର ନୀତି ସମ୍ପାଦନ ଓ ବେଶ ଦର୍ଶନର ବ୍ୟାପକ ସୁବନ୍ଦୋବସ୍ତ କରାଯାଇଥିଲା । ସେହିବର୍ଷ ନୀତି ନିର୍ଘଣ୍ଟରେ ଯଥେଷ୍ଟ ସମୟରୁ ଧାର୍ଯ୍ୟନୀତି ଅନୁଷ୍ଠିତ ହୋଇ ଅତ୍ୟନ୍ତ ଶୃଙ୍ଖଳିତ ଭାବେ ବିଳମ୍ବିତ ରାତ୍ର ଯାଏଁ ମହାପ୍ରଭୁଙ୍କ ବିରଳ ବେଶ ଦର୍ଶନ କରି ଲକ୍ଷାଧିକ ଭକ୍ତ ସନ୍ତୋଷ ମନରେ ଶ୍ରୀକ୍ଷେତ୍ରରୁ ବାହୁଡି ଥିଲେ ।

ଚଳିତ ବର୍ଷ ଅର୍ଥାତ୍ ଦୀର୍ଘ ୨୬ ବର୍ଷ ପରେ ୨୦୨୦ ମସିହା କାର୍ତ୍ତିକ ପଞ୍ଚକରେ ମଳ ତିଥି ପଡିଥିବାରୁ ନଭେମ୍ବର ୨୭ ତାରିଖ ଦିନ ମହାପ୍ରଭୁଙ୍କର ଏହି ଆକର୍ଷଣୀୟ ନାଗାର୍ଜୁନ ବେଶ ଅନୁଷ୍ଠିତ ହୋଇଥିଲା । ଏ ସମ୍ବନ୍ଧରେ ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ପ୍ରାଥମିକ

ପଦକ୍ଷେପ ସ୍ୱରୂପ ବେଶ ସାମଗ୍ରୀ ଯୋଗାଇ ଆସୁଥିବା ଯଜମାନ ଚକ୍ରକୋଟ ଖୁଣ୍ଟିଆଙ୍କ ପରିବାରକୁ ଯୋଗାଯୋଗ କରାଯାଇଥିଲା । ସେହି ବଂଶର ଦାୟାଦ ଚକ୍ରକୋଟ ବଳରାମ ଖୁଣ୍ଟିଆ ବେଶ ସାମଗ୍ରୀ ଯୋଗାଇ ଦେବା ପାଇଁ ସମ୍ମତି ପ୍ରକାଶ କରିବା ପରେ ପ୍ରଶାସନ ପକ୍ଷରୁ ଅନ୍ୟାନ୍ୟ ବନ୍ଦୋବସ୍ତ କରାଯାଇଥିଲା ।

ପରମ୍ପରା ଅନୁଯାୟୀ ଦଶହରା (ବିଜୟା ଦଶମୀ) ଦିନ ଏହି ବେଶର ଅନୁକୂଳ ପୂଜା ହରଚଣ୍ଡୀ ସାହିସ୍ଥିତ ଚକ୍ରକୋଟ ଖୁଣ୍ଟିଆଙ୍କ ନିଜସ୍ୱ ବାସଭବନଠାରେ ଅନୁଷ୍ଠିତ ହୋଇଥିଲା । ବେଶ କାରିଗର ବସନ୍ତ କୁମାର ରଣାଙ୍କ ତତ୍ତ୍ୱାବଧାନରେ ପ୍ରାୟ ୬/୭ ଜଣ ସହଯୋଗୀ ଶିଳ୍ପୀ ଏହି ବେଶ ପ୍ରସ୍ତୁତି କାର୍ଯ୍ୟରେ ସହାୟତା କରିଥିଲେ । ଦୀର୍ଘ ଏକମାସ ଧରି ଏହି ବେଶର ସାଜସଜ୍ଜା କାର୍ଯ୍ୟ ଚାଲିଥିଲା । ଏଥିରେ ମୁଖ୍ୟତଃ ସୋଲ, ବେତ, ସୁନେଲି ରଙ୍ଗର ଜରି, ଜମ୍ବୁରା, କଇଥ ଅଠା, ସିଲ୍କ କନା ଇତ୍ୟାଦି ସାମଗ୍ରୀରେ ବେଶର ବିଭିନ୍ନ ଉପକରଣ ପ୍ରସ୍ତୁତ ହୋଇଥିଲା । ସେହିପରି ଭେଲ୍‌ଭେଟ୍ କନାରେ ମହାପ୍ରଭୁମାନଙ୍କର ଜାମାବସ୍ତ୍ର ଦରଜୀ ସେବକଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିଲେ ହେଁ ବେଶ ଦିନ କେବଳ ଦେବୀ ସୁଭଦ୍ରା ଧାରଣ କରିଥିଲେ । ଅନ୍ୟ ଦୁଇ ଜାମା ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କୁ ସିଂହାରୀ ସେବକମାନେ ପିନ୍ଧାଇ ନଥିଲେ । ସେହିପରି ଚନ୍ଦ୍ର ସୂର୍ଯ୍ୟ ସ୍ୱର୍ଣ୍ଣ ଅଳଙ୍କାରରେ ମଣ୍ଡିତ କରାଯାଇଥିବାରୁ ସୋଲ, ଜରି, ଅଠାରେ ପ୍ରସ୍ତୁତ ଏହି ସାଜସଜ୍ଜା ବେଶରେ ଲାଗି ନଥିଲା ।

ଶ୍ରୀମନ୍ଦିର ଗର୍ଭଗୃହସ୍ଥିତ ରତ୍ନ ସିଂହାସନରେ ଅନୁଷ୍ଠିତ ମହାପ୍ରଭୁଙ୍କର ଏହି ରହସ୍ୟମୟ ନାଗାର୍ଜୁନ ବେଶ ପରମ୍ପରା ଅନୁଯାୟୀ ମଙ୍ଗଳ ଆଳତି ଓ ଅବକାଶ ନୀତି ପରେ ଅନୁଷ୍ଠିତ ହୋଇଥାଏ । ଶ୍ରୀମନ୍ଦିରର ପ୍ରମୁଖ ସେବକ ଭିତରଛ, ତଳୁଛ ଉପସ୍ଥିତ ଥାଇ ପାଳିଆ ପୁଷ୍ପାଳକମାନେ ଠାକୁରମାନଙ୍କୁ ଏହି ବେଶ କରାଇଥାନ୍ତି । ଏଥିରେ ଖୁଣ୍ଟିଆ ଓ ମେକାପ ସେବକମାନେ ସହାୟତା କରିଥାଆନ୍ତି । ଏହା ଏକ ଯଜମାନୀ ବେଶ ହୋଇଥିବାରୁ ଚଳିତ ବର୍ଷ ନଭେମ୍ବର ୨୬ ତାରିଖ ରାତ୍ର ୪ଟା ସମୟରେ ଘଣ୍ଟ, କାହାଳି, ଛତା, ତେଲେଙ୍ଗୀ ବାଦ୍ୟ ବାଜି ଏକ ପଟୁଆର ଶୋଭାଯାତ୍ରାରେ ବେଶ ସାମଗ୍ରୀମାନ ହରଚଣ୍ଡୀ ସାହିରୁ ଶ୍ରୀମନ୍ଦିରକୁ ଆସିଥିଲା । ମହାପ୍ରଭୁଙ୍କର ଏହି ବେଶ ଉପକରଣ, ବସ୍ତ୍ର, ପୁଷ୍ପ ଓ ସୁବର୍ଣ୍ଣ ଅଳଙ୍କାର ସଜ୍ଜିତ ହେବା ପାଇଁ ପ୍ରାୟ ତିନି ଘଣ୍ଟା ସମୟ ଲାଗିଥିଲା ।

ନାଗାର୍ଜୁନ ବେଶ ହେଉଛି ମହାପ୍ରଭୁଙ୍କର ଏକ ବୀର ବେଶ । ଏହି ବେଶରେ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ର ବୀର ନାଗା ବେଶରେ ସଜ୍ଜିତ ହୋଇଥାନ୍ତି । ଦେବୀ ସୁଭଦ୍ରା ବିଭିନ୍ନ ସ୍ୱର୍ଣ୍ଣ ଅଳଙ୍କାରରେ ତ୍ରିଭୁବନେଶ୍ୱରୀ ବେଶରେ ମଣ୍ଡିତ ହୁଅନ୍ତି । ମୁଖ୍ୟତଃ ହାଣ୍ଡିଆ ରୂପକ ଶିରସ୍ତ୍ରାଣକୁ ଭଣ୍ଡି ଫୁଲ ଓ କଦମ୍ବ ଫୁଲ କାଠିରେ ସଜ୍ଜିତ କରି ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କର ମସ୍ତକରେ ଖଞ୍ଜି ଦିଆଯାଏ । ହାଣ୍ଡିଆ ଉପରେ ଚନ୍ଦ୍ର ସୂର୍ଯ୍ୟ, ବେଙ୍ଗପାଟିଆ, ଚନ୍ଦ୍ରହାର ଇତ୍ୟାଦି ଅଳଙ୍କାରରେ ମଣ୍ଡିତ ହୁଏ । ମହାପ୍ରଭୁମାନଙ୍କର ପୃଷ୍ଠଦେଶରେ ଉଭୟ ପାର୍ଶ୍ୱରେ ଢେଣ୍ଡୁ (ନାଗାତାଟି) ବନ୍ଧାଯାଏ, ଢେଣ୍ଡୁ (ନାଗାତାଟି)ରେ ଥିବା ଧନୁର ଅଗ୍ରଭାଗ ଦ୍ୱୟକୁ ବିପରୀତମୁଖୀ ସୋଲ, ଜମ୍ବୁରା, ଜରି ଓ କଇଥ ଅଠାରେ ନିର୍ମିତ ମୟୂର ଥୁଣ୍ଟା ଗ୍ରୀବାଯୁକ୍ତ କରାଯାଏ । ପୃଷ୍ଠ ଦେଶର ଉଭୟ ପାର୍ଶ୍ୱରେ ତୀରପୂର୍ଣ୍ଣ ତୂଣୀର ସହିତ ଅନ୍ୟାନ୍ୟ ଅସ୍ତ୍ରମାନ ଖଞ୍ଜାଯାଏ । ପ୍ରାରମ୍ଭରେ ବେଶକାରୀ ସେବକମାନେ ଠାକୁରମାନଙ୍କୁ ପାଟବସ୍ତ୍ର, ଶ୍ରୀକାପଡା, ଫୁଟା, ପହରଣ, ବଳା ଇତ୍ୟାଦି ଲାଗି କରିବା ପରେ ସିଲ୍କ ବସ୍ତ୍ରରେ ଅଙ୍କିତ ବାଘ ଛାଲକୁ ପାଟବସ୍ତ୍ର ଉପରେ ସଜାଇଥାନ୍ତି । ଶ୍ରୀବିଗ୍ରହମାନଙ୍କ ଶ୍ରୀମୁଖରେ ଆଡଗାଲି ସହିତ ସୋଲ, କପଡା, ଜମ୍ବୁରାରେ ନିର୍ମିତ ଦାଢି ଲଗାଯିବା ସହିତ ବକ୍ଷରେ ବାଙ୍କଛୁରୀ, ଖଣ୍ଡା, କଟାରୀ, ଜଙ୍ଘି, ରଞ୍ଜକ ଦାନି, ଘଣ୍ଟି, ବାଘନଖ ଓ ପୃଷ୍ଠ ଦେଶରେ ଢେଣ୍ଡୁ (ନାଗାତାଟି) ସହିତ କଟିରେ ଢାଲ, ଅସ୍ତ୍ରଶସ୍ତ୍ର ସହିତ ପରଚୁଳା ଖଞ୍ଜା ଯାଇଥାଏ । ଭୁଜରେ ବଡଓଡା, ହୁଦା, ଓଳମାଳ, କର୍ଣ୍ଣରେ କାନଫୁଲ, ସ୍କନ୍ଦ ଦେଶରେ କଳିକି ଇତ୍ୟାଦି ବିଭିନ୍ନ ଉପକରଣରେ ସଜ୍ଜା ଯାଇଥାଏ ।

ଏହି ବେଶ ସହିତ ମହାପ୍ରଭୁମାନଙ୍କୁ ସୁବର୍ଣ୍ଣ ଶ୍ରୀଭୁଜ, ଶ୍ରୀପୟର, କପାଳ ଦେଶରେ ସୁବର୍ଣ୍ଣ ତିଳକ, ଚନ୍ଦ୍ରସୂର୍ଯ୍ୟ ଓ ବିଭିନ୍ନ ସୁବର୍ଣ୍ଣମାଳାରେ ମଣ୍ଡିତ କରାଯାଏ । ଦେବୀ ସୁଭଦ୍ରାଙ୍କ ମସ୍ତକରେ ସ୍ୱର୍ଣ୍ଣ କିରୀଟ, ଚନ୍ଦ୍ରିକା, ତଡଗି, ଅଣ୍ଟାପଟି ଓ ବିଭିନ୍ନ ସ୍ୱର୍ଣ୍ଣମାଳାରେ ଭୂଷିତ କରାଯାଏ । ଶ୍ରୀଜଗନ୍ନାଥଙ୍କ ଶ୍ରୀଭୁଜରେ ଶଙ୍ଖ, ଚକ୍ର ଓ ଶ୍ରୀବଳଭଦ୍ରଙ୍କ ହସ୍ତରେ ହଳ ଓ ମୂଷଳ ଆୟୁଧ ଧାରଣ କରନ୍ତି । ଏତଦ୍‌ବ୍ୟତୀତ ଠାକୁରମାନଙ୍କୁ ବିଭିନ୍ନ ସୁଗନ୍ଧି ପୁଷ୍ପ ଓ ତୁଳସୀମାଳ। ଯଥା– ଅଧରମାଳ, ଶ୍ରୀପୟରମାଳ, ନାକୁଆସି, ଗୁଣା, ଝୁମ୍ପା, ତିଳକ, ଗଭା ଆଦି ପୁଷ୍ପାଳଙ୍କାରରେ ମଣ୍ଡିତ କରାଯାଏ । ଏହି ବେଶରେ ମୁଖ୍ୟତଃ ପାଳିଆ ପୁଷ୍ପାଳକମାନଙ୍କ ବ୍ୟତୀତ ଚାଙ୍ଗଡ଼ା ମେକାପ, ଭଣ୍ଡାର ମେକାପ, ପାଳିଆ ମେକାପ, ପାଳିଆ ଖୁଣ୍ଟିଆ ସଂପୃକ୍ତ ହୋଇଥାନ୍ତି ।

ମହାପ୍ରଭୁମାନଙ୍କୁ ନାଗାର୍ଜ୍ଜୁନ ବେଶରେ ସଜ୍ଜିତ କରାଯିବା ପରେ ଗୋପାଳବଲ୍ଲଭ, ସକାଳ ଧୂପ, ଭୋଗମଣ୍ଡପ ଆଦି ନୀତି ଅନୁଷ୍ଠିତ ହୋଇଥାଏ । ଏହା ପରେ ସର୍ବସାଧାରଣ ଓ ଭକ୍ତମାନଙ୍କୁ ଏହି ବେଶ ଦର୍ଶନ ନିମିତ୍ତ ଭିତରକାଠ ନିକଟକୁ ଯିବା ପାଇଁ ଅନୁମତି ଦିଆଯାଇଥାଏ । କିନ୍ତୁ ଚଳିତ ବର୍ଷ କୋଭିଡ୍ ମହାମାରୀ ଯୋଗୁଁ ଶ୍ରୀମନ୍ଦିର ମଧ୍ୟକୁ କୌଣସି ଭକ୍ତଙ୍କୁ ଛଡ଼ାଯାଇନଥିବାରୁ କେବଳ ପାଳିଆ ସେବକ ଓ ଅନ୍ୟାନ୍ୟ ଦାୟିତ୍ୱରେ କର୍ମଚାରୀ ତଥା ଅନ୍ୟାନ୍ୟ ସେବକମାନେ ବେଶ ଦର୍ଶନ କରିଥିଲେ । ସମଗ୍ର ଓଡ଼ିଶାର ଜଗନ୍ନାଥପ୍ରେମୀ ଭକ୍ତମାନେ ଏହି ଦୁର୍ଲ୍ଲଭ ବେଶ ଦର୍ଶନ କରିବାର ସୁଯୋଗ ମିଳି ନଥିବାରୁ ଦୁଃଖିତ ହୋଇଥିଲେ । କିନ୍ତୁ ବେଶ ସାମଗ୍ରୀ ବା ଉପକରଣ ଆସିବା ସମୟରେ କେତେକ ବୈଦ୍ୟୁତିକ ଗଣମାଧ୍ୟମ ଏହି ଦୃଶ୍ୟର ସିଧା ପ୍ରସାରଣ କରିଥିବାରୁ ସମଗ୍ର ପୃଥିବୀର କୋଟି କୋଟି ଜନସାଧାରଣ ଏହି ଦୃଶ୍ୟ ଅବଲୋକନ କରି ସନ୍ତୋଷ ପ୍ରକାଶ କରିଥିଲେ ।

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନାଗାର୍ଜ୍ଜୁନ ବେଶ ଅନ୍ୟାନ୍ୟ କେତେକ ବେଶ ପରି ପ୍ରାଚୀନ ନ ହେଲେ ମଧ୍ୟ, କେତେକ ବୟସ୍କ ତଥା ଅଭିଜ୍ଞ ସେବକଙ୍କ ମତରେ ପୁରୀ ସାହିଯାତ୍ରାରେ ପ୍ରଦର୍ଶିତ ପର୍ଶୁରାମ ଓ ନାଗା ପରମ୍ପରାର ଅନୁକରଣରେ ଏବଂ କେତେକଙ୍କର ବକ୍ତବ୍ୟ ଅନୁସାରେ ମହାଭାରତର 'ନାଗାର୍ଜ୍ଜୁନ' ଚରିତ୍ରକୁ ନେଇ ଶ୍ରୀବିଗ୍ରହମାନଙ୍କୁ ଅତୀତରେ ଜନୈକ ସେବକ ନାଗାର୍ଜ୍ଜୁନ ବେଶରେ ଦର୍ଶନ କରିବା ପାଇଁ ଆଗ୍ରହ ପ୍ରକାଶ କରିଥିବାରୁ ତଥା ଗଜପତି ମହାରାଜାଙ୍କ ଅନୁମତିକ୍ରମେ ଏହି ବେଶର ସୃଷ୍ଟି ହୋଇଛି । ଏହି ସାମୟିକ ନାଗାର୍ଜ୍ଜୁନ ବେଶକୁ ବୀରତ୍ୱ ବ୍ୟଞ୍ଜକ ତଥା ଶୌର୍ଯ୍ୟ ଓ ମାଧୁର୍ଯ୍ୟର ଏକ ସମନ୍ୱିତ ବେଶରୂପେ ଅଭିହିତ କରାଯାଏ ।

ମହାପ୍ରଭୁଙ୍କର ଏହି ମନୋମୁଗ୍ଧକର ଆକର୍ଷଣୀୟ ନାଗାର୍ଜ୍ଜୁନ ବେଶ ପୁରୀ ଶ୍ରୀମନ୍ଦିର ବ୍ୟତୀତ ଓଡ଼ିଶା ସମେତ ଭାରତର କେତେକ ସ୍ଥାନରେ ପ୍ରତିଷ୍ଠିତ ଜଗନ୍ନାଥ ମନ୍ଦିରମାନଙ୍କରେ ଏହି ଦୁର୍ଲ୍ଲଭ ବେଶ ଅନୁଷ୍ଠିତ ହୋଇଥିବା ବିଭିନ୍ନ ଦୈନିକ ସମ୍ବାଦପତ୍ର ଓ ବୈଦ୍ୟୁତିକ ଗଣମାଧ୍ୟମରୁ ଜଣାଯାଇଥିଲା । ବାସ୍ତବରେ ମହାପ୍ରଭୁ ଯେପରି ରହସ୍ୟମୟ ତାଙ୍କର ଏହି ବେଶ ମଧ୍ୟ ସେପରି ରହସ୍ୟମୟ । ସେଥିପାଇଁ ପ୍ରାୟ ୨୫ରୁ ୨୭ ବର୍ଷ ବ୍ୟବଧାନରେ ପଡୁଥିବା ଏହି ସାମୟିକ ବିରଳ ବେଶ ଦର୍ଶନ କରିବା ପାଇଁ ଭକ୍ତମାନଙ୍କ ମନରେ ପ୍ରଚୁର ଆଗ୍ରହ ପରିଲକ୍ଷିତ ହୋଇଥାଏ । ରାଜ୍ୟ ସରକାର ଶ୍ରୀମନ୍ଦିର ପ୍ରଶାସନ ନିଜ ହସ୍ତକୁ ନେବା ପରେ ୧୯୬୬, ୧୯୬୭, ୧୯୬୮, ୧୯୯୩, ୧୯୯୪ ଓ ଚଳିତବର୍ଷ ୨୦୨୦ ମସିହାରେ ମହାପ୍ରଭୁମାନଙ୍କର ଏହି ଦୁର୍ଲ୍ଲଭ ବେଶ ଅନୁଷ୍ଠିତ ହୋଇଥିବା ଜଣାଯାଏ ।

**ଡକ୍ଟର ଭାସ୍କର ମିଶ୍ର**
ଗବେଷକ, ଶ୍ରୀଜଗନ୍ନାଥ ସଂସ୍କୃତି
ଶ୍ରୀଜଗନ୍ନାଥ ଧାମ, ପୁରୀ



# ପୋଲିସ ବିଭାଗର ସବୁ ଜରୁରୀ ସହାୟତା ପାଇଁ ଗୋଟିଏ ନମ୍ବର– ୧୧୨

ରାଜ୍ୟରେ ପୋଲିସ ପକ୍ଷରୁ ଯୋଗାଇ ଦିଆଯାଉଥିବା ସବୁ ଜରୁରୀ ସହାୟତା ପାଇଁ ଏଣିକି ଗୋଟିଏ ନମ୍ବର, ତାହା ହେଉଛି ୧୧୨ । ଏହା ତୁରନ୍ତ କାର୍ଯ୍ୟକାରୀ ହେବ ।

ପୋଲିସ ଆମ୍ବୁଲାନ୍ସ, ଦମକଳ ତଥା ମହିଳା ହେଲ୍ପ୍ ଲାଇନ ଭଳି ବିଭିନ୍ନ ଜରୁରୀ ସେବା ପାଇଁ ଆଉ ଭିନ୍ନ ଭିନ୍ନ ନମ୍ବରକୁ ଡାଏଲ କରିବାକୁ ପଡିବ ନାହିଁ । ୧୧୨ରେ ପୋଲିସ ପକ୍ଷରୁ ସବୁ ଜରୁରୀ ସହାୟତା ତୁରନ୍ତ ମିଳିପାରିବ ।

ଜନସାଧାରଣଙ୍କ ସୁବିଧା ତଥା ତ୍ୱରିତ ସେବା ଯୋଗାଣକୁ ଦୃଷ୍ଟିରେ ରଖି ସରକାରଙ୍କ ତରଫରୁ ବିଭିନ୍ନ ସହାୟତା ନମ୍ବର ଯଥା– ୧୦୦, ୧୦୧, ୧୦୨, ୧୦୪, ୧୦୮, ୧୮୧ ଓ ୧୦୯୮ ଏସବୁକୁ ଏକୀଭୂତ କରି ଗୋଟିଏ ନମ୍ବର ଯଥା ୧୧୨ରେ ପରିଣତ କରାଯାଇଛି ।

୧୧୨ ଜରିଆରେ ସାଧାରଣ ଲୋକଙ୍କୁ ଦକ୍ଷତାର ସହ ତ୍ୱରିତ ସେବା ଯୋଗାଇବା ପାଇଁ ମୁଖ୍ୟମନ୍ତ୍ରୀ ପୋଲିସ ବିଭାଗର ୧୦୯୮ଟି ବିଭିନ୍ନ ପଦବୀ ସୃଷ୍ଟିକୁ ମଧ୍ୟ ଅନୁମୋଦନ କରିଛନ୍ତି ।

୧୧୨ ସେବା ପାଇଁ ୪–ଡି.ଏସ୍.ପି, ୧୫୧–ସବ୍ ଇନ୍ସପେକ୍ଟର, ୨୦୩– ସହକାରୀ ସବ୍ ଇନ୍ସପେକ୍ଟର ଏବଂ ୭୪୦ ଜଣ କନେଷ୍ଟବଳ ନିୟୋଜିତ ହେବେ ।

ଏତଦ୍‌ବ୍ୟତୀତ ଆଉଟ୍‌ସୋର୍ସିଙ୍ଗ ଜରିଆରେ ୧୯୮ଜଣ Call Taker Executive ଏବଂ ୨୩୬ଟି ଗାଡି ମଧ୍ୟ ନିୟୋଜିତ ହେବେ ।

ପୋଲିସ ପକ୍ଷରୁ ଜନସାଧାରଣଙ୍କୁ ଯୋଗାଇ ଦିଆଯାଉଥିବା ବିଭିନ୍ନ ଜରୁରୀ ସହାୟତା ଗୋଟିଏ ନମ୍ବର ୧୧୨ରେ ଉପଲବ୍ଧ ହେବା ଦ୍ୱାରା ଜନସାଧାରଣଙ୍କୁ ଅଧିକ ଦକ୍ଷତାର ସହ ଉତ୍ତମ ସେବା ଯୋଗାଇ ଦେବାରେ ପୋଲିସ ସଫଳ ହେବ ଏବଂ ବ୍ୟବସ୍ଥା ପ୍ରତି ଲୋକଙ୍କ ଆସ୍ଥା ଅଧିକ ମଜବୁତ୍ ହେବ ବୋଲି ମୁଖ୍ୟମନ୍ତ୍ରୀ ଆଶାବ୍ୟକ୍ତ କରିଛନ୍ତି ।



# ତ୍ୱରାନ୍ୱିତ ହେଲା ମହାନଦୀ ବନ୍ଦର ପ୍ରକଳ୍ପ କାର୍ଯ୍ୟ



ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନିର୍ଦ୍ଦେଶକ୍ରମେ ମୁଖ୍ୟ ଶାସନ ସଚିବ ଶ୍ରୀ ଅସିତ ତ୍ରିପାଠୀଙ୍କ ନେତୃତ୍ୱରେ ୫'ଟି' ସଚିବ ଶ୍ରୀ ଭି.କେ ପାଣ୍ଡିଆନ ଏବଂ ବାଣିଜ୍ୟ ଓ ପରିବହନ ସ୍ୱତନ୍ତ୍ର ସଚିବ ଶ୍ରୀ ମନୋଜ ମିଶ୍ରଙ୍କ ଏକ ଉଚ୍ଚସ୍ତରୀୟ ଟିମ୍ ପ୍ରସ୍ତାବିତ ମହାନଦୀ ବନ୍ଦର ଅଞ୍ଚଳ ପରିଦର୍ଶନ କରିଛନ୍ତି । ଏହି ବରିଷ୍ଠ ଅଧିକାରୀଙ୍କ ସମେତ ପାରାଦୀପ ପୋର୍ଟ ଟ୍ରଷ୍ଟର ଅଧକ୍ଷ ଶ୍ରୀ ରିଙ୍କେଶ ରାୟ ଏବଂ ଅନ୍ୟ ଅଧିକାରୀମାନେ ପ୍ରସ୍ତାବିତ ଅଞ୍ଚଳ ବୁଲି ଦେଖିଛନ୍ତି ।

ଚାରିହଜାର କୋଟିରୁ ଅଧିକ ଟଙ୍କା ବିନିଯୋଗ
ଛଅ ହଜାରରୁ ଅଧିକ ନିଯୁକ୍ତି ସୁଯୋଗ ।

ମହାକାଳପଡ଼ା ବିଧାୟକ ଶ୍ରୀ ଅତନୁ ସବ୍ୟସାଚୀ ନାୟକ Proposed Port Siteରେ ଉପସ୍ଥିତ ରହି Project ବିଷୟରେ ବରିଷ୍ଠ ଅଧିକାରୀମାନଙ୍କ ସହିତ ଆଲୋଚନା କରିଥିଲେ । କେନ୍ଦ୍ରାପଡା ଜିଲ୍ଲାପାଳ ଶ୍ରୀ ସମର୍ଥ ବର୍ମା ମଧ ଆଲୋଚନାରେ ଭାଗ ନେଇଥିଲେ ।

ଏହା ସ୍ମରଣୀୟ ଯେ, ପାରାଦୀପ ବନ୍ଦର ଟ୍ରଷ୍ଟ ଦ୍ୱାରା ମହାନଦୀ ବନ୍ଦରର ନିର୍ମାଣ ପାଇଁ ରାଜ୍ୟ ସରକାର ଦେଇଥିବା ପ୍ରସ୍ତାବରେ କେନ୍ଦ୍ର ବନ୍ଦର, ଜାହାଜ ଚଳାଚଳ ଓ ଜଳମାର୍ଗ ମନ୍ତ୍ରାଳୟ ସହମତି ପ୍ରକାଶ କରିଛି । ଯାହାର ଏମ୍ଓୟୁ ସ୍ୱାକ୍ଷର ଚୂଡାନ୍ତ ପର୍ଯ୍ୟାୟରେ ପହଞ୍ଚିଛି ।

କେନ୍ଦ୍ରାପଡ଼ା ଜିଲ୍ଲା ମହାକାଳପଡ଼ା ବ୍ଲକ୍ ଆଖଡାଶାଳି ଗ୍ରାମ ଅଞ୍ଚଳରେ ହେବାକୁ ଯାଉଥିବା ଏହି ବନ୍ଦର ସବୁଦିନିଆ ବହୁମୁଖୀ ସେବା ଯୋଗାଇବ । ବାର୍ଷିକ ୫୪ ମେଟ୍ରିକ୍ ଟନ୍ କ୍ଷମତା ସମ୍ପନ୍ନ ଏହି ବନ୍ଦର ୪,୦୬୨ କୋଟି ଟଙ୍କା ବ୍ୟୟରେ ପିପିପି ମୋଡ୍‌ରେ ନିର୍ମାଣ ହେବାକୁ ଯାଉଛି, ଯାହାର ୨୨ ମେଟ୍ରିକ୍ ଟନ୍ କ୍ଷମତା ପ୍ରଥମ ପର୍ଯ୍ୟାୟରେ କାର୍ଯ୍ୟକାରୀ ହେବ । ଏନେଇ ସହାୟକ ଭିତ୍ତିଭୂମି ଯେପରି ରାସ୍ତାଘାଟ, ରେଳ ଯୋଗାଯୋଗ ଆଦି ବିକାଶ ଦାୟିତ୍ୱ ପାରାଦୀପ ପୋର୍ଟ ଟ୍ରଷ୍ଟକୁ ପ୍ରଦାନ କରାଯାଇଛି । ରାଜ୍ୟ ସରକାର ଏହି ପ୍ରକଳ୍ପ ପାଇଁ ୩୦୦ ହେକ୍ଟର ଜମି ଚିହ୍ନଟ କରିଛନ୍ତି । ଏଥିସହ ପ୍ରକଳ୍ପ ପାଇଁ ଆବଶ୍ୟକ ସ୍ଥଳେ ଅତିରିକ୍ତ ଜମି ଯୋଗାଇ ଦେବେ ବୋଲି ରାଜ୍ୟ ସରକାର କହିଛନ୍ତି ।

ସୂଚନାଯୋଗ୍ୟ ଯେ, ୨୦୧୮ ମସିହାରେ ରାଜ୍ୟ ସରକାର ମହାନଦୀ ବନ୍ଦର ସ୍ଥାପନ ନେଇ ନିଷ୍ପତ୍ତି ନେବା ସହ ଆରଏଫକ୍ୟୁ ପ୍ରକାଶ କରିଥିଲେ । କିନ୍ତୁ ନିଲାମଧାରୀଙ୍କ ଆଗ୍ରହ ଅଭାବରୁ ଏହି ପ୍ରକଳ୍ପ କାର୍ଯ୍ୟ ଆଗେଇ ପାରିନଥିଲା । ପରେ ପାରାଦୀପ ପୋର୍ଟ ଟ୍ରଷ୍ଟ ଏହି ପ୍ରକଳ୍ପରେ ଆଗ୍ରହ ପ୍ରକାଶ କରି ରାଜ୍ୟ ସରକାରଙ୍କ ସହ ଚୁକ୍ତିନାମା ସ୍ୱାକ୍ଷର ପାଇଁ ପ୍ରସ୍ତାବ ଦେଇଥିଲା ।

ଏହି ବନ୍ଦର କାର୍ଯ୍ୟକ୍ଷମ ହେଲେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ପ୍ରଥମ ପର୍ଯ୍ୟାୟରେ ୪୦୦୦ ଓ ଦ୍ୱିତୀୟ ପର୍ଯ୍ୟାୟରେ ୧୭୦୦ ନିଯୁକ୍ତି ସୃଷ୍ଟି କରିବ । ଏହି ନଦୀ ବନ୍ଦର ସହ ରାଜ୍ୟ ସରକାରଙ୍କ ସହଯୋଗରେ ନିର୍ମିତ ହରିଦାସପୁର-ପାରାଦ୍ୱୀପ ରେଳ ଲାଇନ କେନ୍ଦ୍ରାପଡ଼ା ଜିଲ୍ଲାର ଅର୍ଥନୈତିକ ଅଭିବୃଦ୍ଧି ଓ ପ୍ରଗତିରେ ମାଇଲ୍‌ଖୁଣ୍ଟ ସାବ୍ୟସ୍ତ ହେବ ।



## କୃଷକ, ମିଶନ ଶକ୍ତି ଓ ଏମ୍‌ଏସ୍‌ଏମ୍‌ଇକୁ ଋଣ ପ୍ରଦାନ ସଂପର୍କରେ ଜିଲ୍ଲାପାଳ ଓ ବ୍ୟାଙ୍କରମାନଙ୍କ ସହିତ ମୁଖ୍ୟମନ୍ତ୍ରୀଙ୍କ ସମୀକ୍ଷା

# ଭଲ ପ୍ରଦର୍ଶନ କରୁଥିବା ବ୍ୟାଙ୍କ୍‌ମାନଙ୍କୁ ପୁରସ୍କୃତ କରାଯିବ

**– ମୁଖ୍ୟମନ୍ତ୍ରୀ**

ଓଡିଶା ଆଜି ସଫଳତାର ସହ କୋଭିଡ ପରିଚାଳନା କରି ସାରା ଦେଶରେ ଉଦାହରଣ ସୃଷ୍ଟି କରିପାରିଛି । ଟିକା ଆସିବାର ସମ୍ଭାବନା ସହିତ ନୂଆବର୍ଷକୁ ଆମେ ନୂଆ ଆଶା ସହିତ ସ୍ୱାଗତ କରୁଛୁ । ଏଭଳି ସମୟରେ ଅର୍ଥନୀତିର ପୁନରୁଦ୍ଧାରର ଆଶାକୁ ଆମେ ରାଜ୍ୟର ପ୍ରତ୍ୟେକ ପରିବାର ନିକଟରେ ପହଞ୍ଚାଇବାକୁ ଚାହୁଁଛୁ । କିନ୍ତୁ ଯଦି ସେମାନଙ୍କର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା ଆମେ ପୂରଣ ନ କରିପାରୁ, ତେବେ ଆମ ବ୍ୟବସ୍ଥା, ଆମର ସଂସ୍ଥାମାନଙ୍କର କୌଣସି ମୂଲ୍ୟ ରହିବ ନାହିଁ । ରାଜ୍ୟର ଲକ୍ଷ ଲକ୍ଷ ଚାଷୀ, ମିଶନ ଶକ୍ତି ଗୋଷ୍ଠୀ, କ୍ଷୁଦ୍ର ଓ ମଧ୍ୟମ ଶିଳ୍ପ ଉଦ୍ୟୋଗୀମାନଙ୍କର ବର୍ତ୍ତମାନ ଋଣ ହେଉଛି ପ୍ରଥମ ଆବଶ୍ୟକତା । ଋଣ ପାଇଲେ ହିଁ ସେମାନେ ନିଜ ଗୋଡରେ ଠିଆ ହୋଇପାରିବେ ଏବଂ ଆମର ଅର୍ଥନୀତି ମଧ ଗତିଶୀଳ ହୋଇପାରିବ । ଆମେ ସେମାନଙ୍କୁ ପୂର୍ଣ୍ଣ ପ୍ରାଣରେ ସାହାଯ୍ୟ କରିବା ଆବଶ୍ୟକ । ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ରାଜ୍ୟର କୃଷକ, ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ, MSMEକୁ ଋଣ ପ୍ରଦାନ ସଂପର୍କରେ ଜିଲ୍ଲାପାଳ ଓ ବ୍ୟାଙ୍କରମାନଙ୍କ ସହିତ ସମୀକ୍ଷା କରି ଏହି ପରାମର୍ଶ ଦେଇଛନ୍ତି ।

> ଚାଷୀ, ମିଶନ ଶକ୍ତି ଗୋଷ୍ଠୀ ଓ MSMEମାନେ ହିଁ ଆମର ଲକ୍ଷ ଲକ୍ଷ ଉଦ୍ୟୋଗୀ ।
>
> ସେମାନଙ୍କୁ ନିଜ ଗୋଡରେ ଠିଆ କରିବାକୁ ହେଲେ ଋଣହିଁ ପ୍ରଥମ ଆବଶ୍ୟକତା – ମୁଖ୍ୟମନ୍ତ୍ରୀ

ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଗତ କିଛି ସପ୍ତାହ ମଧ୍ୟରେ ଋଣ ପ୍ରଦାନ କ୍ଷେତ୍ରରେ ଉନ୍ନତି ପରିଲକ୍ଷିତ ହୋଇଥିଲେ ମଧ୍ୟ ଋଣ ଚାହୁଁଥିବା ପ୍ରତ୍ୟେକ ନାଗରିକର ଆବଶ୍ୟକତା ପୂରଣ ହେବା ପର୍ଯ୍ୟନ୍ତ ଏହି ଧାରା ଅବ୍ୟାହତ ରହିବା ଜରୁରୀ ।

ଚାଷୀମାନଙ୍କ ସମସ୍ୟା ଉପରେ ଆଲୋକପାତ କରି ମୁଖ୍ୟମନ୍ତ୍ରୀ କହିଲେ ଯେ ପ୍ରତିବର୍ଷ ଅନିୟମିତ ପାଣିପାଗର କଷ୍ଟ ସହୁଥିବା ଚାଷୀମାନଙ୍କୁ ସେମାନଙ୍କ ଆବଶ୍ୟକତା ଅନୁଯାୟୀ ଋଣ ପ୍ରଦାନ କରି ସେମାନଙ୍କୁ ସାହାଯ୍ୟ କରିପାରିବା । ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଅଧିକାଂଶ ଜିଲ୍ଲାରେ ଚାଷୀମାନଙ୍କୁ ଋଣପ୍ରଦାନ କ୍ଷେତ୍ରରେ ଭଲ ଅଗ୍ରଗତି ହୋଇଛି । ସୁନ୍ଦରଗଡ, ସୋନପୁର ଓ ବଲାଙ୍ଗୀର ଜିଲ୍ଲାରେ ଚାଷୀମାନଙ୍କୁ ଋଣପ୍ରଦାନ କ୍ଷେତ୍ରରେ ଉନ୍ନତ ପ୍ରଦର୍ଶନ ହୋଇଥିବାରୁ ମୁଖ୍ୟମନ୍ତ୍ରୀ ସେମାନଙ୍କୁ ପ୍ରଶଂସା କରିଥିଲେ । ମାଲକାନଗିରି, ଢେଙ୍କାନାଳ ଓ କଳାହାଣ୍ଡି ଜିଲ୍ଲାକୁ ଏ କ୍ଷେତ୍ରରେ ଅଧିକ ଉନ୍ନତି ଆଣିବା ପାଇଁ ପରାମର୍ଶ ଦେଇଥିଲେ । ସେହିପରି ରାଜ୍ୟ ସମବାୟ ବ୍ୟାଙ୍କ୍, କାନାରା ବ୍ୟାଙ୍କ୍ ଓ ବନ୍ଧନ ବ୍ୟାଙ୍କ୍ ଋଣ ପ୍ରଦାନରେ ଭଲ ପ୍ରଦର୍ଶନ କରିଥିବାରୁ ସେମାନଙ୍କୁ ଅଭିନନ୍ଦନ ଜଣାଇବା

ସହିତ ସେଣ୍ଟ୍ରାଲ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ, ପଞ୍ଜାବ ନ୍ୟାସ୍‌ନାଲ୍ ବ୍ୟାଙ୍କ୍ ଓ ୟୁକୋ ବ୍ୟାଙ୍କ୍‌କୁ ଏ କ୍ଷେତ୍ରରେ ଆହୁରି ଭଲ ପ୍ରଦର୍ଶନ ପାଇଁ ପରାମର୍ଶ ଦେଇଥିଲେ ।

ମିଶନ ଶକ୍ତି ଗୋଷ୍ଠୀମାନଙ୍କୁ ଋଣ ପ୍ରଦାନ ରାଜ୍ୟ ସରକାରଙ୍କ ପ୍ରାଥମିକତା ବୋଲି ପ୍ରକାଶ କରି ମୁଖ୍ୟମନ୍ତ୍ରୀ କହିଥିଲେ ଯେ ସମ୍ବଲପୁର, କନ୍ଧମାଳ, ନୂଆପଡା ଓ ବାଲେଶ୍ୱର ଜିଲ୍ଲା ଏ କ୍ଷେତ୍ରରେ ଭଲ ପ୍ରଦର୍ଶନ କରିଛନ୍ତି । ଯାଜପୁର, ମୟୂରଭଞ୍ଜ, ଗଞ୍ଜାମ ଓ ପୁରୀ ଜିଲ୍ଲାକୁ ଉନ୍ନତି ଆଣିବା ପାଇଁ ସେ ପରାମର୍ଶ ଦେଇଥିଲେ । ସେହିପରି ବ୍ୟାଙ୍କ୍‌ମାନଙ୍କ କ୍ଷେତ୍ରରେ ଗ୍ରାମ୍ୟ ବ୍ୟାଙ୍କ୍, ୟୁକୋ ବ୍ୟାଙ୍କ୍, କାନାରା ବ୍ୟାଙ୍କ୍ ଓ ଷ୍ଟେଟ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ ଭଲ ପ୍ରଦର୍ଶନ କରିଛନ୍ତି ବୋଲି ପ୍ରକାଶ କରି ୟୁନିଅନ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ, ଉତ୍କଳ ଗ୍ରାମ୍ୟ ବ୍ୟାଙ୍କ୍, ଆକ୍ସିସ ବ୍ୟାଙ୍କ୍ ଆଦି ଅଧିକ ଋଣ ପ୍ରଦାନ କରିବା ପାଇଁ ପରାମର୍ଶ ଦେଇଥିଲେ ।

ଅଣୁ, କ୍ଷୁଦ୍ର ଓ ମଧ୍ୟମ ଶିଳ୍ପ ସଂସ୍ଥାଗୁଡିକ ରାଜ୍ୟ ଅର୍ଥନୀତିର ମେରୁଦଣ୍ଡ ବୋଲି ବର୍ଣ୍ଣନା କରି ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଏମାନଙ୍କ ଋଣ ପ୍ରଦାନର ଧାରା ସନ୍ତୋଷଜନକ ରହିଛି । ନୟାଗଡ, ଯାଜପୁର ଆଦି ଜିଲ୍ଲା ସେମାନଙ୍କର ଲକ୍ଷ୍ୟଠାରୁ ଅଧିକ ଉନ୍ନତ ପ୍ରଦର୍ଶନ କରିଛନ୍ତି । ଗଜପତି, ଦେବଗଡ ଓ ନୂଆପଡା ଆଦି ଜିଲ୍ଲାଗୁଡିକର ପ୍ରଦର୍ଶନରେ ଉନ୍ନତିର ଆବଶ୍ୟକତା ରହିଛି ବୋଲି ସେ କହିଥିଲେ । ସେହିପରି ସେଣ୍ଟ୍ରାଲ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ ଓ ପଞ୍ଜାବ ନ୍ୟାସନାଲ ବ୍ୟାଙ୍କ୍ ତାଙ୍କର ବାର୍ଷିକ ଋଣପ୍ରଦାନ ଲକ୍ଷ୍ୟଠାରୁ ଅଧିକ ଋଣ ପ୍ରଦାନ କରିଛନ୍ତି ବୋଲି ସେ କହିଥିଲେ । ଷ୍ଟେଟ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ ବର୍ତ୍ତମାନ ସୁଦ୍ଧା MSME କ୍ଷେତ୍ରକୁ ସର୍ବାଧିକ ୭୨୫୦ କୋଟି ଟଙ୍କା ପ୍ରଦାନ କରିଛି । ତେବେ ବ୍ୟାଙ୍କ୍ ଅଫ୍ ବରୋଦା, ଇଣ୍ଡିଆନ ବ୍ୟାଙ୍କ୍ ଓ ଆକ୍ସିସ ବ୍ୟାଙ୍କ୍ ଏ କ୍ଷେତ୍ରରେ ଅଧିକ ଉନ୍ନତି କରିବାର ଆବଶ୍ୟକତା ରହିଛି ବୋଲି ସେ କହିଥିଲେ ।

ଚଳିତ ଆର୍ଥିକ ବର୍ଷର ଶେଷ ତିନିମାସ ମଧ୍ୟରେ ସବୁ ଜିଲ୍ଲା ଓ ବ୍ୟାଙ୍କ୍‌ମାନେ ବର୍ଷ ଶେଷ ସୁଦ୍ଧା ସେମାନଙ୍କର ଋଣ ପ୍ରଦାନର ଲକ୍ଷ୍ୟ ପୂରଣ କରିବେ ବୋଲି ମୁଖ୍ୟମନ୍ତ୍ରୀ ଆଶାପ୍ରକାଶ କରିଥିଲେ । ଆଗାମୀ ଫେବୃଆରୀ ୨୬ ତାରିଖରେ ଏ ସଂପର୍କରେ ଆଉ ଥରେ ସମୀକ୍ଷା ହେବ ବୋଲି ସେ କହିଥିଲେ ।

ଭଲ ପ୍ରଦର୍ଶନ କରୁଥିବା ବ୍ୟାଙ୍କ ମାନଙ୍କ ସଂପର୍କରେ କେନ୍ଦ୍ର ଅର୍ଥମନ୍ତ୍ରୀଙ୍କୁ ଅବଗତ କରାଯିବ ବୋଲି ପ୍ରକାଶ କରି ସେମାନଙ୍କୁ ଚଳିତ ଆର୍ଥିକ ବର୍ଷ ଶେଷରେ ପୁରସ୍କୃତ ମଧ୍ୟ କରାଯିବ ବୋଲି ମୁଖ୍ୟମନ୍ତ୍ରୀ ଘୋଷଣା କରିଥିଲେ ।

ବୈଠକରେ ପ୍ରାରମ୍ଭିକ ସୂଚନା ଦେଇ ମୁଖ୍ୟ ଶାସନ ସଚିବ ଶ୍ରୀ ଅସିତ ତ୍ରିପାଠୀ କହିଥିଲେ ଯେ କୃଷି, ମହିଳା ଓ MSME କ୍ଷେତ୍ରରେ ବ୍ୟାପକ ଅର୍ଥନୈତିକ କାର୍ଯ୍ୟକ୍ରମର ଆବଶ୍ୟକତା ରହିଛି । ଏହି ତିନୋଟି ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରକୁ ପର୍ଯ୍ୟାପ୍ତ ପରିମାଣରେ ଋଣପ୍ରଦାନ କରାଯିବା ଉଚିତ ବୋଲି ସେ ମତ ଦେଇଥିଲେ

ମିଶନ ଶକ୍ତି ସଂପର୍କରେ ସୂଚନା ଦେଇ ବିଭାଗର କମିଶନର ତଥା ନିର୍ଦ୍ଦେଶକ ଶ୍ରୀମତୀ ସୁଜାତା କାର୍ତ୍ତିକେୟନ୍ କହିଥିଲେ ଯେ ପ୍ରତ୍ୟେକ ସ୍ୱୟଂ ସହାୟକ ଗୋଷ୍ଠୀକୁ ହାରାହାରି ଭାବେ ଅତି କମ୍‌ରେ ୨ ଲକ୍ଷ ଟଙ୍କା ଋଣ ଦେବା ଆବଶ୍ୟକ । ବ୍ୟାଙ୍କ୍‌ମାନେ ଋଣପ୍ରଦାନ ଆବେଦନକୁ ପକାଇ ନ ରଖି ତୁରନ୍ତ ଫଇସଲା କରିବାକୁ ସେ ପରାମର୍ଶ ଦେଇଥିଲେ ।



# ରୋଜଗାର ଅଭାବରୁ ଯେଭଳି ଗୋଟିଏ ବି ପରିବାର କଷ୍ଟ ନ ପାଏ

**– ମୁଖ୍ୟମନ୍ତ୍ରୀ**

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଭିଡିଓ କନ୍‌ଫରେନ୍ସିଂ ଜରିଆରେ ସବୁ ଜିଲ୍ଲାରେ ମହାତ୍ମା ଗାନ୍ଧୀ ଜାତୀୟ ଗ୍ରାମୀଣ ରୋଜଗାର ଯୋଜନା ଏବଂ ସହରାଞ୍ଚଳ ରୋଜଗାର ଯୋଜନା ଆଦିର କାର୍ଯ୍ୟକାରିତା ସଂପର୍କରେ ସମୀକ୍ଷା କରିଥିଲେ । ଏହି ଅବସରରେ ମୁଖ୍ୟମନ୍ତ୍ରୀ କହିଥିଲେ ଯେ କୋଭିଡ ମହାମାରୀ ଗତ ମାର୍ଚ୍ଚରୁ ଆମ ସମସ୍ତଙ୍କ ପାଇଁ ଏକ ଅଭୂତପୂର୍ବ ଆହ୍ୱାନ ସୃଷ୍ଟି କରିଛି । ବିଶ୍ୱର ଆର୍ଥିକ ଅଭିବୃଦ୍ଧି ନିମ୍ନଗାମୀ ହୋଇଛି ଏବଂ ଏହାଦ୍ୱାରା ଗରିବ ଲୋକମାନେ ହିଁ ଅଧିକ କ୍ଷତିଗ୍ରସ୍ତ ହୋଇଛନ୍ତି । ଗରିବ ଲୋକଙ୍କ ପାଇଁ ଏହି ଦୁଃସମୟରେ ରୋଜଗାର ସୁନିଶ୍ଚିତ କରିବା ସରକାରଙ୍କର ପ୍ରାଥମିକତା । ରୋଜଗାର ଅଭାବରୁ ଯେପରି ଗୋଟିଏ ବି ପରିବାର କଷ୍ଟ ନ ପାଏ, ସେଥିପ୍ରତି ଧ୍ୟାନ ଦେବା ପାଇଁ ଜିଲ୍ଲାପାଳମାନଙ୍କୁ ମୁଖ୍ୟମନ୍ତ୍ରୀ ସତର୍କ କରାଇ ଦେଇଛନ୍ତି । MGNREGA ସହିତ ରାଜ୍ୟ ସରକାରଙ୍କର ନିଜସ୍ୱ ଯୋଜନା ସହରାଞ୍ଚଳ ରୋଜଗାର ଯୋଜନା ଜରିଆରେ ଗରିବ ଲୋକଙ୍କୁ ବ୍ୟାପକ ନିଯୁକ୍ତି ସୁଯୋଗ ଯୋଗାଇ ଦେବା ପାଇଁ ରାଜ୍ୟ ସରକାର ପଦକ୍ଷେପ ନେଇଛନ୍ତି ।

MGNREGA ଲକ୍ଷ୍ୟ ପୂରଣ ଦିଗରେ ଯାଜପୁର, କୋରାପୁଟ ଓ ସୋନପୁର ଜିଲ୍ଲା ବହୁତ ଭଲ କାମ କରିଥିବାରୁ ମୁଖ୍ୟମନ୍ତ୍ରୀ ସଂପୃକ୍ତ ଜିଲ୍ଲାର ଜିଲ୍ଲାପାଳମାନଙ୍କୁ ଅଭିନନ୍ଦନ ଜଣାଇଥିଲେ ।

ଏହି ଦୁଇ କାର୍ଯ୍ୟକ୍ରମ ଜରିଆରେ ଚଳିତ ଆର୍ଥକ ବର୍ଷ ଶେଷ ସୁଦ୍ଧା ୨୦ କୋଟି ମାନବ ଦିବସ ସୃଷ୍ଟି ପାଇଁ ଲକ୍ଷ୍ୟ ରଖାଯାଇଛି । ଏହି ଦୁଇ ଯୋଜନା ଜରିଆରେ ଜୀବିକା ଅର୍ଜନ କରୁଥିବା ଗରିବ ଲୋକମାନଙ୍କ ମଜୁରି ପାଇବାରେ ବିଳମ୍ବ ହେଲେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ବୋଲି ମୁଖ୍ୟମନ୍ତ୍ରୀ ଜିଲ୍ଲାପାଳମାନଙ୍କୁ ସତର୍କ କରାଇ ଦେଇଛନ୍ତି । ହିତାଧିକାରୀମାନେ ଯେଭଳି ଠିକ୍ ସମୟରେ ସେମାନଙ୍କ ମଜୁରି ପାଇପାରିବେ, ତା'ଉପରେ ଗୁରୁତ୍ୱ ଦେବା ସହିତ ମୋ ସରକାର ପ୍ଲାଟଫର୍ମ ଜରିଆରେ ହିତାଧିକାରୀମାନଙ୍କୁ ନିୟମିତ ଫୋନ୍ କରି ମଜୁରି ବିଷୟ ତଦାରଖ କରିବା ପାଇଁ ଜିଲ୍ଲାପାଳମାନଙ୍କୁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ । କେତେକ ଜିଲ୍ଲାରେ ହିତାଧିକାରୀମାନଙ୍କୁ ଠିକ୍ ସମୟରେ ମଜୁରି ଲୋକଙ୍କୁ ମିଳୁଥିବାରୁ ମୁଖ୍ୟମନ୍ତ୍ରୀ ସନ୍ତୋଷ ପ୍ରକାଶ କରିଥିଲେ ।

ଆଗାମୀ ଜାନୁଆରୀ ପହିଲା ୨୦୨୧ରୁ ପ୍ରତି ଜିଲ୍ଲାରେ ଏହି ରୋଜଗାର ଯୋଜନା ସଂପର୍କରେ Feedback ପାଇଁ ସ୍ୱତନ୍ତ୍ର ଭାବରେ ମୋ ସରକାର ସେଲ୍ କାର୍ଯ୍ୟ କରିବ ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ ।

MGNREGA ଲକ୍ଷ୍ୟ ପୂରଣ ଦିଗରେ ଯାଜପୁର, କୋରାପୁଟ ଓ ସୋନପୁର ଜିଲ୍ଲା ବହୁତ ଭଲ କାମ କରିଥିବାରୁ ମୁଖ୍ୟମନ୍ତ୍ରୀ ସଂପୃକ୍ତ ଜିଲ୍ଲାର ଜିଲ୍ଲାପାଳମାନଙ୍କୁ ଅଭିନନ୍ଦନ ଜଣାଇଥିଲେ । ଯେଉଁ ଜିଲ୍ଲାଗୁଡ଼ିକରେ ଲୋକମାନେ ଅନ୍ୟ ରାଜ୍ୟକୁ କାମ ପାଇଁ ଯାଉଛନ୍ତି, ସେହିସବୁ ଜିଲ୍ଲା ଉପରେ ସ୍ୱତନ୍ତ୍ର ଫୋକସ୍ କରାଯିବ ବୋଲି

ମୁଖ୍ୟମନ୍ତ୍ରୀ କହିଥିଲେ । ଏହିସବୁ ଜିଲ୍ଲାରେ ପରିବାର ପିଛା ଅଧିକ ୧୦୦ ଦିନ ଓ ଅତିରିକ୍ତ ମଜୁରି ଦିଆଯିବା ବିଷୟ ସଂପର୍କରେ ମୁଖ୍ୟମନ୍ତ୍ରୀ ଉଲ୍ଲେଖ କରିଥିଲେ ।

ସେହିପରି ଆଗାମୀ ମାର୍ଚ୍ଚ ପୂର୍ବରୁ ୧୦୦୦ ମିଶନ ଶକ୍ତି ଗୃହ ଏବଂ ଜାନୁଆରୀ ଶେଷ ସୁଦ୍ଧା ଗୋଟିଏ ଲେଖାଏଁ ପରିଚୟ ଗୃହର ନିର୍ମାଣ କାର୍ଯ୍ୟ ଶେଷ କରିବା ପାଇଁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଥିଲେ । ଯେଉଁ ଜିଲ୍ଲାରେ ଅଧିକ ମା'ମାନଙ୍କୁ ଓ ମିଶନ ଶକ୍ତି ଗୋଷ୍ଠୀମାନଙ୍କୁ ରୋଜଗାର ଯୋଜନା ତଦାରଖରେ ନିୟୋଜିତ କରାଯିବ, ସେହି ଜିଲ୍ଲାମାନଙ୍କୁ ଉତ୍ସାହିତ କରାଯିବ । ସେହିପରି ସହରାଞ୍ଚଳ ରୋଜଗାର ଯୋଜନାରେ ଗରିବ ଲୋକମାନଙ୍କୁ ଗୋଷ୍ଠୀସଂଘ ଓ ମିଶନ ଶକ୍ତି ଜରିଆରେ କାମ ଦିଆଯାଉଅଛି । ଏ ଦିଗରେ ଢେଙ୍କାନାଳ, ଜଗତସିଂହପୁର ଓ ମୟୂରଭଂଜ ଜିଲ୍ଲା ଭଲ କାମ କରିଥିବାରୁ ମୁଖ୍ୟମନ୍ତ୍ରୀ ସେହିସବୁ ଜିଲ୍ଲାର ଜିଲ୍ଲାପାଳମାନଙ୍କୁ ଧନ୍ୟବାଦ ଜଣାଇଥିଲେ । ଏହି ଯୋଜନାରେ ଦିଆଯାଇଥିବା ଅର୍ଥକୁ ଆର୍ଥିକ ବର୍ଷ ଶେଷ ସୁଦ୍ଧା ସଂପୂର୍ଣ୍ଣ ଭାବେ ବିନିଯୋଗ କରିବା ପାଇଁ ମୁଖ୍ୟମନ୍ତ୍ରୀ ଜିଲ୍ଲାପାଳମାନଙ୍କୁ ପରାମର୍ଶ ଦେଇଥିଲେ ।

ସେହିପରି ସହରାଞ୍ଚଳ ରୋଜଗାର ଯୋଜନା ସଂପର୍କରେ ସୂଚନା ଦେଇ ଗୃହ ଓ ନଗର ଉନ୍ନୟନ ବିଭାଗର ପ୍ରମୁଖ ସଚିବ ଶ୍ରୀ ଜି. ମାଥି ଭାତନନ୍ କହିଲେ ଯେ ୧୧୪ଟି ପୌରାଞ୍ଚଳରେ ୮୦୦୦ଟି ପ୍ରକଳ୍ପ ହାତକୁ ନିଆଯାଇଛି । ସେଥିମଧ୍ୟରୁ ୫୦୦୦ଟି ପ୍ରକଳ୍ପ ଶେଷ ହୋଇଛି ଏବଂ ବାକି ସମସ୍ତ ପ୍ରକଳ୍ପ ବିଭିନ୍ନ ସ୍ତରରେ ରହିଛି । ବର୍ତ୍ତମାନ ସୁଦ୍ଧା ୧୧.୬ ଲକ୍ଷ ମାନବ ଦିବସ ସୃଷ୍ଟି ହୋଇଛି ବୋଲି ସେ କହିଥିଲେ । ଏହାସହିତ ମହାନଗର ନିଗମଗୁଡିକରେ ୩.୩ ଲକ୍ଷ ମାନବ ଦିବସ ସୃଷ୍ଟି କରାଯାଇପାରିଛି ବୋଲି ସେ ସୂଚନା ଦେଇଥିଲେ ।

ମୁଖ୍ୟ ଶାସନ ସଚିବ ଶ୍ରୀ ଅସିତ ତ୍ରିପାଠୀ କହିଲେ ଯେ ରାଜ୍ୟରେ ୨୦ କୋଟି ମାନବ ଦିବସ ସୃଷ୍ଟି କରିବା ପାଇଁ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶକୁ ପ୍ରଶାସନ ଗୁରୁତ୍ୱ ଦେଇ କାର୍ଯ୍ୟ କରୁଛି । ଗ୍ରାମାଞ୍ଚଳରେ ୫୦ ଲକ୍ଷ ନାମମାତ୍ର ଚାଷୀ ଓ ଭୂମିହୀନ କୃଷି ଶ୍ରମିକମାନଙ୍କ ପାଇଁ ଅଧିକ ଜୀବିକା ସୃଷ୍ଟି କରିବା ପାଇଁ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି ।

ମହାତ୍ମା ଗାନ୍ଧୀ ଗ୍ରାମୀଣ କର୍ମନିଯୁକ୍ତି ଯୋଜନା ସଂପର୍କରେ ଉପସ୍ଥାପନା ରଖି ପଞ୍ଚାୟତିରାଜ ବିଭାଗର ପ୍ରମୁଖ ସଚିବ ଶ୍ରୀ ଦେଓରଂଜନ କୁମାର ସିଂହ କହିଲେ ଯେ ଏହି କାର୍ଯ୍ୟକ୍ରମରେ ଗତବର୍ଷ ମାତ୍ର ୨.୯୬ ଲକ୍ଷ ଜବ୍ କାର୍ଡ ଦିଆଯାଇଥିବା ବେଳେ ଚଳିତ ବର୍ଷ ୭.୨୬ ଲକ୍ଷ ଜବ୍ କାର୍ଡ ଦିଆଯାଇଛି । ବର୍ତ୍ତମାନ ସୁଦ୍ଧା ୧୪.୫୦ କୋଟି ମାନବ ଦିବସ ସୃଷ୍ଟି କରାଯାଇସାରିଛି । ୩୧ ଲକ୍ଷ ପରିବାର ଓ ୫୧ ଲକ୍ଷ ଲୋକଙ୍କୁ ରୋଜଗାର ଯୋଗାଇ ଦିଆଯାଇଛି । ଚଳିତ ବର୍ଷ ଦୈନିକ ହାରାହାରି ୧୦.୨୩ ଲକ୍ଷ ଲୋକଙ୍କୁ ଶ୍ରମଭିତ୍ତିକ ରୋଜଗାର ଯୋଗାଇ ଦିଆଯାଉଛି ବୋଲି ସେ ସୂଚନା ଦେଇଥିଲେ ।

ସେହିପରି ସହରାଞ୍ଚଳ ରୋଜଗାର ଯୋଜନା ସଂପର୍କରେ ସୂଚନା ଦେଇ ଗୃହ ଓ ନଗର ଉନ୍ନୟନ ବିଭାଗର ପ୍ରମୁଖ ସଚିବ ଶ୍ରୀ ଜି. ମାଥି ଭାତନନ୍ କହିଲେ ଯେ ୧୧୪ଟି ପୌରାଞ୍ଚଳରେ ୮୦୦୦ଟି ପ୍ରକଳ୍ପ ହାତକୁ ନିଆଯାଇଛି । ସେଥିମଧ୍ୟରୁ ୫୦୦୦ଟି ପ୍ରକଳ୍ପ ଶେଷ ହୋଇଛି ଏବଂ ବାକି ସମସ୍ତ ପ୍ରକଳ୍ପ ବିଭିନ୍ନ ସ୍ତରରେ ରହିଛି । ବର୍ତ୍ତମାନ ସୁଦ୍ଧା ୧୧.୬ ଲକ୍ଷ ମାନବ ଦିବସ ସୃଷ୍ଟି ହୋଇଛି ବୋଲି ସେ କହିଥିଲେ । ଏହାସହିତ ମହାନଗର ନିଗମଗୁଡିକରେ ୩.୩ ଲକ୍ଷ ମାନବ ଦିବସ ସୃଷ୍ଟି କରାଯାଇପାରିଛି ବୋଲି ସେ ସୂଚନା ଦେଇଥିଲେ ।

ଆଲୋଚନାରେ ଅଂଶଗ୍ରହଣ କରି ମୁଖ୍ୟମନ୍ତ୍ରୀଙ୍କ ସଚିବ (୫-ଟି) ଶ୍ରୀ ଭି.କେ. ପାଣ୍ଡିଆନ କହିଲେ ଯେ ମିଶନ ଶକ୍ତିର ମା'ମାନଙ୍କୁ ତଦାରଖ କାର୍ଯ୍ୟରେ ସକ୍ରିୟ ଭାବରେ ନିୟୋଜିତ କରାଯିବା ସହିତ ସେମାନଙ୍କ ତଦାରଖ ପ୍ରାପ୍ୟ ଅବିଳମ୍ବେ ଦେବା ପାଇଁ ଜିଲ୍ଲାପାଳମାନଙ୍କୁ ପରାମର୍ଶ ଦେଇଥିଲେ ।

# ଟିକାକରଣ ପାଇଁ ରାଜ୍ୟର ପ୍ରସ୍ତୁତି ପ୍ରକ୍ରିୟା ଆଗୁଆ ସ୍ତରରେ

**- ମୁଖ୍ୟମନ୍ତ୍ରୀ**

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଭିଡିଓ କନ୍‌ଫରେନ୍ସିଂ ମାଧ୍ୟମରେ କୋଭିଡ ମୁକାବିଲାର ସମୀକ୍ଷା କରି ରାଜ୍ୟର କୋଭିଡ ମୁକାବିଲା କାର୍ଯ୍ୟକ୍ରମରେ ସନ୍ତୋଷ ବ୍ୟକ୍ତ କରିଛନ୍ତି । ମୁଖ୍ୟମନ୍ତ୍ରୀ କହିଛନ୍ତି ପୂଜା ସମୟରେ ଯେଉଁ ଆଶଙ୍କା ଥିଲା, ତାକୁ ସଫଳତାର ସହ ଦୂରୀଭୂତ କରାଯାଇପାରିଛି । ସେହିପରି ଶୀତଋତୁରେ ଆଶଙ୍କା ମଧ୍ୟ ଦୂରୀଭୂତ ହେବ ବୋଲି ସେ ଆଶାପ୍ରକାଶ କରିଥିଲେ । କୋଭିଡ ପରିଚାଳନାରେ ଓଡିଶା ଦେଶର ଶ୍ରେଷ୍ଠ ରାଜ୍ୟମାନଙ୍କ ମଧ୍ୟରେ ସ୍ଥାନ ପାଇଛି ଏବଂ ଏହାକୁ ନୀତି ଆୟୋଗ ମଧ୍ୟ ପ୍ରଶଂସା କରିଛି ବୋଲି ସେ କହିଥିଲେ ।




ଏହି ଅବସରରେ କୋଭିଡ-୧୯ ଯୋଗୁଁ ଉପୁଜିଥିବା ଅର୍ଥନୈତିକ ଆହ୍ୱାନର ମୁକାବିଲା ପାଇଁ ରାଜ୍ୟର ପ୍ରଶାସନିକ ବ୍ୟବସ୍ଥା ସଂପୂର୍ଣ୍ଣ ଭାବେ ସଜାଗ ରହି କାର୍ଯ୍ୟ କରିବାକୁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଥିଲେ । ସେ କହିଥିଲେ ଯେ ରାଜ୍ୟ ସରକାର ଜୀବିକା ସୃଷ୍ଟି ସଂପର୍କିତ କାର୍ଯ୍ୟକ୍ରମ ଉପରେ ଗୁରୁତ୍ୱ ଦେଇ କାର୍ଯ୍ୟ କରୁଛନ୍ତି । ଜୀବିକା କାର୍ଯ୍ୟକ୍ରମ ସହିତ ଚାଷୀ, ମିଶନ ଶକ୍ତି, କୃଷକ ଓ MSMEମାନଙ୍କୁ ଋଣ ପ୍ରଦାନ କାର୍ଯ୍ୟକ୍ରମ ସଂପର୍କରେ ସେ ଡିସେମ୍ବର ୨୨ ତାରିଖ ଦିନ ଜିଲ୍ଲାପାଳ ଓ ବ୍ୟାଙ୍କ୍ କର୍ତ୍ତୃପକ୍ଷଙ୍କ ସହ ସମୀକ୍ଷା କରିବେ ବୋଲି କହିଥିଲେ । ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଏହିସବୁ ଜୀବିକା କାର୍ଯ୍ୟକ୍ରମକୁ ଋଣ ପ୍ରଦାନରେ ଅବହେଳାକୁ ଆଦୌ ବରଦାସ୍ତ କରାଯିବ ନାହିଁ । ଅବହେଳା କରୁଥିବା ବ୍ୟାଙ୍କ୍ ସଂପର୍କରେ ସେହିଦିନହିଁ କେନ୍ଦ୍ର ଅର୍ଥ ମନ୍ତ୍ରଣାଳୟକୁ ଅବଗତ କରାଯିବ ବୋଲି କହିଥିଲେ ।

ଦେଶରେ ଟିକାକରଣ ପ୍ରକ୍ରିୟା ଖୁବ୍ ଶୀଘ୍ର ଆରମ୍ଭ ହେବାର ସମ୍ଭାବନା ରହିଛି ବୋଲି ପ୍ରକାଶ କରି ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଏଥିପାଇଁ ଓଡିଶାରେ ସଂପୂର୍ଣ୍ଣ ଡାଟାବେସ୍ ପ୍ରସ୍ତୁତ ହୋଇଛି ଏବଂ ଆନୁଷଙ୍ଗିକ ବ୍ୟବସ୍ଥା ମଧ୍ୟ କରାଯାଇଛି । ତେବେ ଦେଶରେ ଟିକାକରଣ ପ୍ରକ୍ରିୟା ଏକ ବର୍ଷରୁ ମଧ୍ୟ ଅଧିକ ସମୟ ଲାଗିପାରେ ବୋଲି

ଅନୁମାନ କରାଯାଉଛି । ଏ ସମୟରେ ସମସ୍ତ ପ୍ରକାର କୋଭିଡ ନିୟମାବଳୀକୁ ପୂର୍ବ ଭଳି ଜାରି ରଖିବାକୁ ସେ ପରାମର୍ଶ ଦେଇଥିଲେ । କୋଭିଡ ନିୟମାବଳୀ ଓ ଟିକାକରଣ ସଂପର୍କରେ ଜନସାଧାରଣଙ୍କୁ ସଚେତନ କରିବା ପାଇଁ ଉପଯୁକ୍ତ ସୂଚନା ଅଭିଯାନ ମଧ୍ୟ କାର୍ଯ୍ୟକାରୀ କରିବାକୁ ସେ ପରାମର୍ଶ ଦେଇଥିଲେ ।

ମୁଖ୍ୟ ଶାସନ ସଚିବ ଶ୍ରୀ ଅସିତ ତ୍ରିପାଠୀ କହିଲେ ଯେ ରାଜ୍ୟରେ କୋଭିଡ ପରିସ୍ଥିତିରେ ଦ୍ରୁତ ଉନ୍ନତି ଜାରି ରହିଛି । ଟିକାକରଣ ପାଇଁ ରାଜ୍ୟ ସରକାର ସମସ୍ତ ପ୍ରକାର ବ୍ୟବସ୍ଥା କେନ୍ଦ୍ର ସରକାରଙ୍କ ସହ ପରାମର୍ଶ କରି କାର୍ଯ୍ୟକାରୀ କରୁଛନ୍ତି ।

ସ୍ୱାସ୍ଥ୍ୟ ବିଭାଗ ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ପି.କେ. ମହାପାତ୍ର ତାଙ୍କ ଉପସ୍ଥାପନାରେ କହିଥିଲେ କୋଭିଡ ମୁକାବିଲାରେ ରାଜ୍ୟର ଉନ୍ନତ ପ୍ରଦର୍ଶନ ଜାରି ରହିଛି । ଆରୋଗ୍ୟ ହାର ବର୍ତ୍ତମାନ ୯୮.୫୨ ପ୍ରତିଶତ ରହିଛି, ଯାହାକି ସାରା ଦେଶରେ ଦ୍ୱିତୀୟ ସର୍ବଶ୍ରେଷ୍ଠ ସୂଚକାଙ୍କ । ସେହିପରି ଦୈନିକ ସଂକ୍ରମଣ ହାର ପ୍ରଥମ ଥର ପାଇଁ ୧ ପ୍ରତିଶତରୁ ହ୍ରାସ ପାଇ ବର୍ତ୍ତମାନ ୦.୯୬ ପ୍ରତିଶତରେ ରହିଛି ବୋଲି ସେ କହିଥିଲେ ।

ସେ କହିଥିଲେ ଯେ ଡିସେମ୍ବର ୩୧ ତାରିଖ ସୁଦ୍ଧା ଗଞ୍ଜାମ, ନୟାଗଡ ଓ କୋରାପୁଟରେ ସେରୋ ସର୍ଭେ କରାଯିବ ଏବଂ ଜାନୁଆରୀରେ କଟକ ଓ ଭୁବନେଶ୍ୱରରେ କରାଯିବ । ଟିକାକରଣର Module ଅନୁଯାୟୀ ସମସ୍ତ ପ୍ରସ୍ତୁତି କରାଯାଉଛି । ନିର୍ବାଚନ ପ୍ରକ୍ରିୟାର ଅନୁକରଣରେ ଟିକାକରଣ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଯିବ ବୋଲି ସେ କହିଥିଲେ । Cold Chain, ସିରିଞ୍ଜ ଏବଂ ଅନ୍ୟାନ୍ୟ ଆନୁଷଂଗିକ ବ୍ୟବସ୍ଥା ପାଇଁ ପଦକ୍ଷେପ ନିଆଯାଇଛି ବୋଲି ସେ ସୂଚନା ଦେଇଥିଲେ ।

ପୋଲିସ ମହାନିର୍ଦ୍ଦେଶକ ଶ୍ରୀ ଅଭୟ, ପୋଲିସ ପ୍ରଶାସନର କୋଭିଡ ମୁକାବିଲା ସଂପର୍କରେ ସୂଚନା ଦେଇଥିଲେ । ଏହି ବୈଠକରେ ଉନ୍ନୟନ କମିଶନର ଓ ଅନ୍ୟାନ୍ୟ ବରିଷ୍ଠ ଅଧିକାରୀ ଯୋଗ ଦେଇଥିଲେ । ମୁଖ୍ୟମନ୍ତ୍ରୀଙ୍କ ସଚିବ (୫-ଟି) ଶ୍ରୀ ଭି.କେ. ପାଣ୍ଡିଆନ କାର୍ଯ୍ୟକ୍ରମ ସଂଚାଳନ କରିଥିଲେ ।



# ୧୮୦ କୋଟି ଟଙ୍କା ଖର୍ଚ୍ଚ ହେବ, ୧୮ ମାସରେ କାମ ଶେଷ ହେବ

– ମୁଖ୍ୟମନ୍ତ୍ରୀ




ଭୁବନେଶ୍ୱର ବରମୁଣ୍ଡା ବସ୍‌ଷ୍ଟାଣ୍ଡ ରାଜ୍ୟର ସବୁଠାରୁ ବ୍ୟସ୍ତ ବହୁଳ ବସ୍‌ଷ୍ଟାଣ୍ଡ । ରାଜ୍ୟର ବିଭିନ୍ନ ସ୍ଥାନକୁ ଏଠାରୁ ବସ୍ ଚଳାଚଳ କରିଥାଏ । ହଜାର ହଜାର ଯାତ୍ରୀ ମଧ୍ୟ ପ୍ରତିଦିନ ବିଭିନ୍ନ ସ୍ଥାନକୁ ବସ୍‌ଯୋଗେ ଯାଇଥାନ୍ତି । ତେଣୁ ଏହାକୁ ଏକ ଅତ୍ୟାଧୁନିକ ରୂପ ଦେବା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନିର୍ଦ୍ଦେଶକ୍ରମେ କାମ ଆରମ୍ଭ ହୋଇଛି ।

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ବରମୁଣ୍ଡାର ଆନ୍ତଃରାଜ୍ୟ ବସ୍ ଟର୍ମିନାଲ୍‌ର ନିର୍ମାଣ କାର୍ଯ୍ୟ ବୁଲି ଦେଖିବା ସହ ଏହି କାର୍ଯ୍ୟର ଅଗ୍ରଗତି ସମ୍ପର୍କରେ ସମୀକ୍ଷା କରିଥିଲେ । ଏହି ପ୍ରକଳ୍ପର ଦୁଇଟି ଭାଗ ରହିଛି । ଗୋଟିଏ ଖଣ୍ଡଗିରିସ୍ଥ ବସ୍ ଡିପୋ ଏବଂ ଅନ୍ୟଟି ବରମୁଣ୍ଡା ଆନ୍ତଃରାଜ୍ୟ ବସ୍ ଟର୍ମିନାଲ୍ । ଖଣ୍ଡଗିରି ବସ୍ ଡିପୋ କାର୍ଯ୍ୟ



ବରମୁଣ୍ଡା ଆନ୍ତଃରାଜ୍ୟ ବସ୍ ଟର୍ମିନାଲ୍ ବୁଲି ଦେଖିଲେ ମୁଖ୍ୟମନ୍ତ୍ରୀ

ସମ୍ପୂର୍ଣ୍ଣ ହୋଇଯାଇଛି ଏବଂ ମୁଖ୍ୟମନ୍ତ୍ରୀ ତାହା ବୁଲି ଦେଖିଥିଲେ ଏବଂ ଉନ୍ନତ ନିର୍ମାଣ କାର୍ଯ୍ୟ ସହିତ ବସ୍ ରହିବାର ସୁବ୍ୟବସ୍ଥା ହୋଇଥିବାରୁ ସନ୍ତୋଷ ପ୍ରକାଶ କରିଥିଲେ ।

ବରମୁଣ୍ଡା ଆନ୍ତଃରାଜ୍ୟ ବସ୍ ଟର୍ମିନାଲ୍‌କୁ ପୂର୍ବ ଭାରତର ପ୍ରମୁଖ ବସ୍ ଟର୍ମିନାଲ୍ ଭାବରେ ଗଢି ତୋଳିବାକୁ ରାଜ୍ୟ ସରକାରଙ୍କର ଲକ୍ଷ୍ୟ ରହିଛି । ଅତ୍ୟାଧୁନିକ ଡିଜାଇନ ସହିତ ଯାତ୍ରୀମାନଙ୍କର ସୁବିଧା ସୁଯୋଗ, ବସ୍‌ମାନଙ୍କର ପ୍ରଶସ୍ତ ପ୍ରବେଶ ଓ ପ୍ରସ୍ଥାନ ତଥା ବାଣିଜ୍ୟିକ ସ୍ଥାନ ଆଦି ଉପରେ ଏଥିରେ ସ୍ୱତନ୍ତ୍ର ଗୁରୁତ୍ୱ ଦିଆଯାଇଛି । ମୁଖ୍ୟମନ୍ତ୍ରୀଙ୍କ ୫'ଟି' କାର୍ଯ୍ୟକ୍ରମ ଅଧୀନରେ ଏହି ଆନ୍ତଃରାଜ୍ୟ ବସ୍ ଟର୍ମିନାଲ୍‌ର ରୂପାନ୍ତରୀକରଣ କାର୍ଯ୍ୟ ହାତକୁ ନିଆଯାଇଛି ।

ଏହି କାର୍ଯ୍ୟ ପାଇଁ ମୋଟ ୧୮୦ କୋଟି ଟଙ୍କା ଖର୍ଚ୍ଚ ହେବ ଏବଂ ୧୮ ମାସ ମଧ୍ୟରେ କାର୍ଯ୍ୟ ସମ୍ପୂର୍ଣ୍ଣ ହେବ ବୋଲି ମୁଖ୍ୟମନ୍ତ୍ରୀ ଘୋଷଣା କରିଥିଲେ ।

ମୁଖ୍ୟମନ୍ତ୍ରୀଙ୍କ ଏହି ପରିଦର୍ଶନ ସମୟରେ ମନ୍ତ୍ରୀ ଶ୍ରୀ ଅଶୋକ ଚନ୍ଦ୍ର ପଣ୍ଡା, ବିଧାୟକ, ଅନନ୍ତ ନାରାୟଣ ଜେନା, ବିଧାୟକ, ସୁଶାନ୍ତ ରାଉତ, ମୁଖ୍ୟ ଶାସନ ସଚିବ ଶ୍ରୀ ଅସିତ ତ୍ରିପାଠୀ, ମୁଖ୍ୟମନ୍ତ୍ରୀଙ୍କ ସଚିବ (୫'ଟି') ଶ୍ରୀ ଭି.କେ. ପାଣ୍ଡିଆନ, ଭୁବନେଶ୍ୱର ମହାନଗର ନିଗମର କମିଶନର ଓ ପୋଲିସ କମିଶନରଙ୍କ ସମେତ ବରିଷ୍ଠ ଅଧିକାରୀମାନେ ଉପସ୍ଥିତ ଥିଲେ ।



# ଚାଷୀ ଓ ଯୁବକମାନଙ୍କୁ ବ୍ୟାପକ କୃଷି ଉଦ୍ୟୋଗ ସୃଷ୍ଟି କରିବା ପାଇଁ ମୁଖ୍ୟମନ୍ତ୍ରୀଙ୍କ ଆହ୍ୱାନ

– ମୁଖ୍ୟମନ୍ତ୍ରୀ




ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଭିଡିଓ କନ୍‌ଫରେନ୍ସିଂ ଜରିଆରେ ମତ୍ସ୍ୟ ଓ ପଶୁସଂପଦ ବିକାଶ ବିଭାଗର ୧୫ଟି ଅନ୍‌ଲାଇନ ସେବାର ଶୁଭାରମ୍ଭ କରିଛନ୍ତି । ଏହାସହିତ ମୁଖ୍ୟମନ୍ତ୍ରୀଙ୍କ ଉପସ୍ଥିତିରେ ହୀରାକୁଦ ଜଳଭଣ୍ଡାର ମଧ୍ୟରେ ପଞ୍ଜୁରି ମାଛଚାଷ ପାଇଁ ବିଭିନ୍ନ ଉଦ୍ୟୋଗୀମାନଙ୍କ ସହିତ ଚୁକ୍ତିପତ୍ର ମଧ୍ୟ ସ୍ୱାକ୍ଷରିତ ହୋଇଥିଲା ।

ଏହି ଅବସରରେ ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଏହି ଅନ୍‌ଲାଇନ୍ ସେବା ଦ୍ୱାରା ମାଛଚାଷୀ ଓ ଉଦ୍ୟୋଗୀମାନେ ଘରେ ରହି ଅନ୍‌ଲାଇନ୍ ଜରିଆରେ ବିଭିନ୍ନ ସରକାରୀ ଯୋଜନାର ସୁବିଧା ପାଇପାରିବେ । ଡଙ୍ଗାର ପଞ୍ଜୀକରଣ ଓ ଲାଇସେନ୍ସ ପ୍ରାପ୍ତି, ଲବଣାକ୍ତ ଜଳର ମାଛଚାଷର ପଞ୍ଜୀକରଣ ଓ ବିଭିନ୍ନ ଯୋଜନାରେ ରିହାତି ଲାଭ ଆଦି ଅନେକ କାର୍ଯ୍ୟ ସୁବିଧାରେ ହୋଇପାରିବ ।

ବୃହତ୍ ଓ ମଧ୍ୟମ ଧରଣର ହ୍ରଦରେ କେଜ୍ କଲ୍ଚର ଜରିଆରେ ମାଛଚାଷକୁ ପ୍ରୋତ୍ସାହନ ଦେବା ପାଇଁ ରାଜ୍ୟ ସରକାର ଚଳିତ ବର୍ଷ ମାର୍ଚ୍ଚ ମାସରେ ଏକ ନୂତନ ନୀତି ଗ୍ରହଣ କରିଥିଲେ ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ । ଏହାଦ୍ୱାରା ରାଜ୍ୟର ବାର୍ଷିକ ମତ୍ସ୍ୟ ଉତ୍ପାଦନ ୧.୨୪ ଟନ୍ ବଢିପାରିବ ଏବଂ ରାଜ୍ୟରେ ମାଛର ସଂପୂର୍ଣ୍ଣ ଚାହିଦା ପୂରଣ

ହୋଇପାରିବ ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ । କେଜ୍ କଲ୍ଚର ଦ୍ୱାରା ମତ୍ସ୍ୟ କ୍ଷେତ୍ରରେ ଉଦ୍ୟୋଗୀମାନଙ୍କୁ ପ୍ରୋତ୍ସାହନ ମିଳିବା ସହିତ ନିଯୁକ୍ତି ସୁଯୋଗ ମଧ୍ୟ ବୃଦ୍ଧି ହେବ । ଜଳଭଣ୍ଡାର ଲିଜ୍ ରୟାଲଟିରୁ ପ୍ରାଥମିକ ମତ୍ସ୍ୟ ସମବାୟ ସମିତିଗୁଡିକ ଲାଭବାନ ହୋଇପାରିବେ ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ ।

ରାଜ୍ୟର କୃଷି ଉଦ୍ୟୋଗୀମାନଙ୍କୁ ରାଜ୍ୟ ସରକାର ବାର୍ଷିକ ୫୦ ଲକ୍ଷ ଟଙ୍କା ଆର୍ଥିକ ସହାୟତା ଦେଉଛନ୍ତି ବୋଲି ପ୍ରକାଶ କରି ମୁଖ୍ୟମନ୍ତ୍ରୀ ରାଜ୍ୟର ଚାଷୀ ଓ ଯୁବକମାନଙ୍କୁ ବ୍ୟାପକ ଭାବରେ କୃଷି ଉଦ୍ୟୋଗ ସୃଷ୍ଟି କରିବା ପାଇଁ ଆହ୍ୱାନ ଦେଇଥିଲେ ।

ମୁଖ୍ୟମନ୍ତ୍ରୀ କହିଥିଲେ ଯେ, ରାଜ୍ୟ ସରକାର କୃଷିର ଆନୁଷଙ୍ଗିକ କ୍ଷେତ୍ରଗୁଡିକୁ ରାଜ୍ୟର ଚାଷୀ, ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଓ ଉଦ୍ୟୋଗୀମାନଙ୍କ ପାଇଁ ଅଭିବୃଦ୍ଧିର ଇଞ୍ଜିନ୍ ଭାବେ ଗ୍ରହଣ କରିଛନ୍ତି ଏବଂ ଏଥିପାଇଁ ଚଳିତ ବର୍ଷ ଏହି କ୍ଷେତ୍ରକୁ ବଜେଟ ପରିମାଣ ଦୁଇ ଗୁଣ ବୃଦ୍ଧି କରାଯାଇଛି । ୨୦୧୯-୨୦ରେ ରାଜ୍ୟର ମତ୍ସ୍ୟ ଓ ପଶୁସଂପଦ କ୍ଷେତ୍ରରେ ଅଭିବୃଦ୍ଧି ହାର ୧୯ ପ୍ରତିଶତ ରହିଥିଲା, ଯାହାକି ଅନ୍ୟ ପ୍ରାଥମିକ କ୍ଷେତ୍ରଗୁଡିକଠାରୁ ଯଥେଷ୍ଟ ଅଧିକ । ଏହା ସହିତ କୋଭିଡ ସମୟରେ ଆନୁଷଙ୍ଗିକ କ୍ଷେତ୍ରଗୁଡିକ ପାଇଁ ରାଜ୍ୟ ସରକାର ୧୭୩ କୋଟି ଟଙ୍କାର କୋଭିଡ ପ୍ୟାକେଜ କାର୍ଯ୍ୟକାରୀ କରିଛନ୍ତି ବୋଲି ପ୍ରକାଶ କରି ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଏହାଦ୍ୱାରା ୪୪ ହଜାରରୁ ଅଧିକ ଚାଷୀ ଉପକୃତ ହୋଇଛନ୍ତି ।

**ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ମତ୍ସ୍ୟ ଓ ପଶୁସଂପଦ ବିକାଶ ବିଭାଗର ୧୫ଟି ଅନ୍‌ଲାଇନ ସେବାର ଶୁଭାରମ୍ଭ**

**ହୀରାକୁଦ ଜଳଭଣ୍ଡାର ମଧ୍ୟରେ ହେବ କେଜ୍ କଲ୍ଚର ମାଛଚାଷ**

ସୂଚନାଯୋଗ୍ୟ ଯେ, ରାଜ୍ୟର ବୃହତ୍ ଓ ମଧ୍ୟମ ଜଳଭଣ୍ଡାରର ୧ ପ୍ରତିଶତ ଜଳଭାଗରେ ବ୍ୟବସାୟିକ ଭାବରେ ପଞ୍ଜୁରି ମାଛଚାଷ ନିମନ୍ତେ ରାଜ୍ୟ ସରକାର ନିଷ୍ପତ୍ତି ଗ୍ରହଣ କରିଛନ୍ତି । ଏହାର ପ୍ରଥମ ପଦକ୍ଷେପ ସ୍ୱରୂପ ହୀରାକୁଦ ଜଳଭଣ୍ଡାର ମଧ୍ୟରେ ୬୦୦ଟି ସବ୍ ଜୋନ୍ ମଧ୍ୟରୁ ୧୦୦ଟି ସବ୍ ଜୋନ୍‌ରେ ଉଦ୍ୟୋଗୀମାନଙ୍କଠାରୁ ଦରଖାସ୍ତ ଆହ୍ୱାନ କରାଯାଇଥିଲା । ପ୍ରଥମ ପର୍ଯ୍ୟାୟରେ ୨୦ ଜଣ ଉଦ୍ୟୋଗୀଙ୍କ ସହିତ ହୀରାକୁଦ ଜଳଭଣ୍ଡାରରେ ପଞ୍ଜୁରି ମାଛଚାଷ ନିମନ୍ତେ ଚୁକ୍ତିପତ୍ର ସ୍ୱାକ୍ଷରିତ ହୋଇଛି ।

ବିଭାଗୀୟ ମନ୍ତ୍ରୀ ଶ୍ରୀ ଅରୁଣ ସାହୁ, ମତ୍ସ୍ୟ ଓ ପଶୁସଂପଦ ବିକାଶ କ୍ଷେତ୍ରରେ ରାଜ୍ୟ ସରକାରଙ୍କ ବିଭିନ୍ନ ପଦକ୍ଷେପ ସଂପର୍କରେ ବର୍ଣ୍ଣନା କରି କହିଥିଲେ ଯେ ମୁଖ୍ୟମନ୍ତ୍ରୀଙ୍କର ଦୃଢ ନେତୃତ୍ୱରେ ବିଭାଗ ରାଜ୍ୟର କୃଷକ ଓ ଆନୁଷଙ୍ଗିକ କ୍ଷେତ୍ରରେ ବିକାଶ ଉପରେ ଗୁରୁତ୍ୱ ଦେବା ସହ ଏ କ୍ଷେତ୍ରରେ ଅଧିକ ଉଦ୍ୟୋଗୀ ସୃଷ୍ଟି ପାଇଁ ପ୍ରୋତ୍ସାହିତ କରାଯାଉଛି ।

ଏହି ଅବସରରେ କେଜ୍ କଲ୍ଚର ମାଛଚାଷ ସଂପର୍କରେ ଏକ ଭିଡିଓ ଚିତ୍ର ପ୍ରଦର୍ଶିତ ହୋଇଥିଲା ଏବଂ ଦୁଇ ଜଣ କେଜ୍ କଲ୍ଚର ଚାଷୀମାନଙ୍କ ମତାମତ ନିଆଯାଇଥିଲା । ବିଭାଗୀୟ ସଚିବ ଶ୍ରୀ ଆର୍ ରଘୁ ପ୍ରସାଦ ସ୍ୱାଗତ ଭାଷଣ ଦେଇଥିଲେ ଏବଂ ପଶୁସଂପଦ ବିଭାଗ ନିର୍ଦ୍ଦେଶକ ଧନ୍ୟବାଦ ଅର୍ପଣ କରିଥିଲେ । ଏହି କାର୍ଯ୍ୟକ୍ରମରେ ମୁଖ୍ୟ ଶାସନସଚିବ ଶ୍ରୀ ଅସିତ ତ୍ରିପାଠୀ, ଉନ୍ନୟନ କମିଶନର ଶ୍ରୀ ସୁରେଶ ମହାପାତ୍ର, କୃଷି ଉତ୍ପାଦନ କମିଶନର ଶ୍ରୀ ଆର୍. କେ ଶର୍ମା, କୃଷି ବିଭାଗ ପ୍ରମୁଖ ସଚିବ ଶ୍ରୀ ସୌରଭ ଗର୍ଗ, ଜଳସଂପଦ ବିଭାଗର ପ୍ରମୁଖ ସଚିବ ଶ୍ରୀମତୀ ଅନୁ ଗର୍ଗ ଏବଂ ମୁଖ୍ୟମନ୍ତ୍ରୀଙ୍କ ସଚିବ (୫-ଟି) ଶ୍ରୀ ଭି.କେ. ପାଣ୍ଡିଆନ ଏବଂ ଅନ୍ୟ ବରିଷ୍ଠ ଅଧିକାରୀମାନେ ଉପସ୍ଥିତ ଥିଲେ ।



# ସମୃଦ୍ଧ ଓଡ଼ିଶାର ସୁବର୍ଣ୍ଣ କଥା ଓ ଗାଥା

**ପ୍ରଫୁଲ୍ଲ କୁମାର ଦାସ**

ଭାରତ ଇତିହାସରେ ବୀରଭୋଗ୍ୟା କଳିଙ୍ଗ, ସାମରିକ କଳାରେ ପ୍ରସିଦ୍ଧି ଲାଭ କରିବା ସହ ଏକ ଦୁର୍ଦ୍ଧର୍ଷ ସ୍ୱାଧୀନ ଓ ସ୍ୱାଭିମାନ ଜାତି ଭାବରେ ପରିଚୟ ହାସଲ କରିପାରିଥିଲା । କଳିଙ୍ଗ ସମ୍ରାଟ୍ ମହାମେଘ ବାହନ ଐର ଖାରବେଳଙ୍କ ବୀରତ୍ୱର ଗାଥା ସେ କାଳର ସୁବର୍ଣ୍ଣ ଅଧ୍ୟାୟ ସୃଷ୍ଟି କରିଥିଲା । ସର୍ବଧର୍ମ ସମନ୍ୱୟର ଦେବତା ଶ୍ରୀଜଗନ୍ନାଥ ଏ ମାଟିର ନିତ୍ୟ ଆରାଧ୍ୟ ଓ ବିଶ୍ୱ ପ୍ରସିଦ୍ଧ । ବୀର ଉତ୍କଳର ଗୌରବମୟ ଅତୀତ ଗାରିମାମୟ ଏବଂ ସମୃଦ୍ଧ ସଂସ୍କୃତି ତଥା ଉତ୍କର୍ଷ ଭାସ୍କର୍ଯ୍ୟ ଓ ନିଖୁଣ କଳା ସ୍ଥାପତ୍ୟର ଐତିହ୍ୟ ବହନ କରିଛି ଏହି ଭୂଖଣ୍ଡ । ଏହାର ନୌବାଣିଜ୍ୟ ପରମ୍ପରା ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ବିପୁଳ ପ୍ରାକୃତିକ ସଂପଦ, ଦକ୍ଷ ମାନବ ସମ୍ବଳରେ ସମୃଦ୍ଧ ହୋଇ ଆଜିର ଓଡିଶା ରାଜନୈତିକ, ଅର୍ଥନୈତିକ, ସାମାଜିକ, ଶୈକ୍ଷିକ, ସାଂସ୍କୃତିକ ଅଭିବୃଦ୍ଧି କ୍ଷେତ୍ରରେ ବିକାଶର ଚରମ ସୀମାରେ ଅଗ୍ରସର ହୋଇଛି । ବୀର ଓଡିଆମାନେ ବିଜ୍ଞାନ, ପ୍ରଯୁକ୍ତି ବିଦ୍ୟା, କାରିଗରୀ, କଳାସ୍ଥାପତ୍ୟ, ସାହିତ୍ୟ, କ୍ରୀଡାକ୍ଷେତ୍ରରେ ସୁନାମ ଅର୍ଜନ କରି ଉତ୍କର୍ଷ ଲାଭ କରିଛନ୍ତି ।

ବିକାଶ କ୍ଷେତ୍ରରେ ଓଡିଶା ସାରା ଦେଶରେ ଏକ ନୂଆ ପରିଚୟ ସୃଷ୍ଟି କରିଛି । ଫଳରେ ଓଡିଶାର ଇତିହାସ









ଗୌରବ ମଣ୍ଡିତ ହୋଇଛି । ସମଗ୍ର ଭାରତବର୍ଷରେ ଓଡିଶାର ସ୍ଥାନ ସ୍ୱତନ୍ତ୍ର ଓ ଅନନ୍ୟ । ଭାଷାଭିତ୍ତିରେ ପ୍ରଥମ ରାଜ୍ୟ ଭାବରେ ୧୯୩୬ ମସିହା ଅପ୍ରେଲ ପହିଲାରେ ଓଡ଼ିଶା ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ଲାଭ କରିଥିଲା । ନିକଟ ଅତୀତରେ ଆମ ରାଜ୍ୟର ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇସାରିଛି । ‘‘ସୁଜଳା, ସୁଫଳା, ବନଗିରି ଭରା ଆମ ଏ ଜନ୍ମଭୂମି ଏପରି ଦେଶସାରା ଅବା ଜଗତରେ ଖୋଜିଲେ ବି ମିଳିବନି । ଏ ଦେଶର ମାଟି ଅତିହିଁ ପବିତ୍ର । ସ୍ୱର୍ଗଠାରୁ ଗରିୟସୀ । ଜଗନ୍ନାଥ ମହାପ୍ରଭୁ ରହନ୍ତି ଯେଉଁଠି ସ୍ୱର୍ଗ ଛାଡି ଏଠି ଆସି । ଏ ଦେଶ ସନ୍ତାନ ଜୟ କରିଥିଲେ

ଗଙ୍ଗାଠାରୁ ଗୋଦାବରୀ, ଶୌର୍ଯ୍ୟ ବୀର୍ଯ୍ୟରେ ଶିଳ୍ପ ବାଣିଜ୍ୟରେ କିଏ ହେବ ତା'ର ସରି ।'' ସ୍ୱତନ୍ତ୍ର ଓଡିଶାର ଜନ୍ମ ସମୟରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ଲେଖନୀରୁ ଝରି ଆସିଥିଲା ସୁପ୍ରସିଦ୍ଧ ସଙ୍ଗୀତ 'ବନ୍ଦେ ଉତ୍କଳ ଜନନୀ' । ଏହାକୁ ସମ୍ମିଳିତ ସ୍ୱରରେ ଗାଇଲେ ଓଡିଆଙ୍କ ଲୋମ ଟାଙ୍କୁରି ଉଠେ । କଳିଙ୍ଗ–ଉତ୍କଳ–ଓଡିଶାର ଗୌରବମୟ ଗାଥାର ଇତିହାସ । ଚଳିତ ବର୍ଷ ''ବନ୍ଦେ ଉତ୍କଳ ଜନନୀ'' ସଙ୍ଗୀତ ରାଜ୍ୟ ମାନ୍ୟତା ପାଇଛି ।

ଏକଦା ବିଶ୍ୱ ଦରବାରରେ ଚହଳ ସୃଷ୍ଟି କରି, ଉତ୍କଳର ଇତିହାସ ପୃଷ୍ଠାରେ ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟର ଅରୁଣିମାକୁ ଅଙ୍କନ କରିଥିବା ସୁବର୍ଣ୍ଣ କଥା ଓ ଗାଥାର ସୁଉଚ୍ଚ ପରମ୍ପରା କ୍ରମଶଃ ଆଜି ହ୍ରାସ ପାଇଛି ସତ, ହେଲେ ଏ ମାଟିର ଯେଉଁ ବାସ୍ନା ଓ ତୃଷ୍ଣା ରହିଛି, ତା'ର ଆଲୋଚନା ଓ ପର୍ଯ୍ୟାଲୋଚନା କରିବା ନିତାନ୍ତ ଆବଶ୍ୟକ । ଉତ୍କର୍ଷ କଳା କୋଣାର୍କର ରାଜ୍ୟ ଓଡିଶା ଆମର ପ୍ରିୟ ଜନ୍ମଭୂମି । ଏହାର ଗୌରବମୟ ଇତିହାସ ପାଠ କଲେ ଏତେ ଆଶ୍ଚର୍ଯ୍ୟ ଲାଗେ ଯେ, ସତରେ କ'ଣ ଏ ମାଟିର ସାରସ୍ୱତ ସାଧକମାନେ ବିଶ୍ୱ ଦରବାରରେ ନିଜକୁ ପ୍ରମାଣିତ କରିପାରିଥିଲେ ଯେ, ସେମାନେ ଥିଲେ ବୀର, ସାହସୀ । ଏକ ଆଦର୍ଶ ବୀର ଓଡିଆ ଦୁଃସାହସୀ ଜାତି ଅନେକ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ମଧ୍ୟ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଯାଇଛନ୍ତି । ଯାହା ଆମ ପାଇଁ ପ୍ରେରଣାର ସ୍ମୃତି ମହୋଦଧି, କଳା, ସ୍ଥାପତ୍ୟ, ନୌବାଣିଜ୍ୟ ଓ ସାହିତ୍ୟ କ୍ଷେତ୍ରରେ ଯୁଗ ଯୁଗର ସୃଷ୍ଟି ସମ୍ପଦ ଛାଡି ଯାଇଛନ୍ତି । ଯାହା ବିଶ୍ୱ ଇତିହାସରେ ବିରଳ । ଅନେକ ଗବେଷକ ଓ ଐତିହାସିକଙ୍କ ମତରେ ୨୦୨୦ ମସିହା ସମୃଦ୍ଧ ଓଡିଶାର ସୁବର୍ଣ୍ଣ ଯୁଗ । ସାମ୍ପ୍ରତିକ ବିଶ୍ୱରେ ବିଭିନ୍ନ କ୍ଷେତ୍ରରେ ଓଡିଶା ଦ୍ରୁତ ଗତିରେ ଆଗେଇ ଚାଲିଥିବା ବେଳେ ଆଜିର ଲେଖକମାନେ ଯଦି ସେମାନଙ୍କର ଲେଖା ମାଧ୍ୟମରେ ବିଶେଷ ଭାବରେ ଗୁରୁତ୍ୱ ଦିଅନ୍ତେ, ତେବେ ସଂସ୍କୃତି ସମ୍ପନ୍ନ ଆମ ଜାତିର ଜୀବନଶୈଳୀ ଏକ ଗୌରବମୟ ଇତିହାସର ବାହକ ଭାବରେ ଯୁଗ ଯୁଗ ପାଇଁ ବଞ୍ଚି ରହନ୍ତା ।

ଏକଦା ଏ ଜାତି ପାଇକ ସମ୍ପ୍ରଦାୟର ସମର କଳାରେ ନିଜର ପାରଦର୍ଶିତା ପ୍ରଦର୍ଶନ କରି ମହାଭାରତ ଯୁଗର ''କୁରୁକ୍ଷେତ୍ର'' ଯୁଦ୍ଧର କଳା କୌଶଳକୁ ଉଜ୍ଜୀବିତ କରିଯାଇଛନ୍ତି । ମହାମେଘବାହନ ଐର ଖାରବେଳ, କପିଳେନ୍ଦ୍ରଦେବ ଓ ପୁରୁଷୋତ୍ତମ ଦେବଙ୍କ ସାମରିକ ଅଭିଯାନ ଇତିହାସ ଆଖି ପୂରେଇ ଦେଖିଛି । ଯେଉଁ ରାଜ୍ୟର ''ବାଣିଜ୍ୟେ ବସତେ ଲକ୍ଷ୍ମୀଃ'' ଅର୍ଥନୈତିକ ଶ୍ରୀବୃଦ୍ଧିର ଇତିହାସ ଓ ବାଗ୍‌ଦେବୀ ସାରଳା ସାରସ୍ୱତ ସୃଷ୍ଟିର ଆଦ୍ୟ ଝଙ୍କାର, ଏ ଜାତିର ପ୍ରାଚୀନ ଇତିହାସ ଏତେ ଭାବୋଦ୍ଦୀପକ ଯାହାକୁ ପ୍ରକାଶ କରିହେବ ନାହିଁ । ''ଚିର ଅଲିଭା ସେ ଅତୀତ ଐତିହ୍ୟ ଗୌରବ ଗାଥା, ସାଧବ ପୁଅର ଦୁଃସାହସର ବଣିଜ କଥା । ତେର ନଈ ସାତ ଦରିଆ ପାରିରେ ବୋଇତ ମେଲି ଯାଉଥିଲେ ଦିନେ କନିକା ଦ୍ୱୀପରୁ କଳଙ୍ଗ ବାଲି ।''

ନୂତନ ସହସ୍ରାବ୍ଦୀରେ ଅଭିବୃଦ୍ଧି ଦିଗରେ ଅଗ୍ରସର ଓଡିଶା ବିକଶିତ ଶକ୍ତି ଭାବେ ଅନ୍ତର୍ଜାତୀୟ ପରିଚିତ ଲାଭ କରିଛି । ସମୃଦ୍ଧ ଓ ସଶକ୍ତ ଓଡିଶା ଗଠନ ପାଇଁ ସାହିତ୍ୟ ସବୁବେଳେ ଉଦ୍ୟମ କରିଆସିଛି । ଆଜିର ଇପ୍‌ସିତ ସକାଳ ଆମକୁ ସୂଚାଇ ଦିଏ ଏକ ସାରସ୍ୱତ ସୁନାର ଓଡିଶାର ସୁନ୍ଦର ଛବି । ଆବେଗ ଭରା ଓ ଅଧୀରତାର ଐକ୍ୟତାନରେ ଚିର ମହକିତ ବର୍ଣ୍ଣମୟ ରୋମାଞ୍ଚର ପ୍ରତ୍ୟେକ ମୁହୂର୍ତ୍ତ ସତରେ କେତେ ସମ୍ବେଦନାରେ ଭରା । ନୀଳ ଗଗନକୁ ଛୁଇଁବାର ସ୍ପର୍ଦ୍ଧାରେ ଉଲ୍ଲସିତ ଶାରଳାଙ୍କ ବୀଣାର ଝଙ୍କାର, ଯେଉଁଠି ପେଞ୍ଚା ପେଞ୍ଚା ବିଶ୍ୱ ମୈତ୍ରୀ ଜାତି ଜାତିକା ଫୁଲ ହୋଇ ଫୁଟେ, ଆଉ ଜୀବନକୁ ମୁଗ୍ଧ ଦୃଷ୍ଟିରେ ଦେଖିବାର ଆବେଗ ସଂଚରି ଯାଏ ସାହିତ୍ୟ ଓ ଇତିହାସକୁ ପୁଲକିତ କରି, ସୁଦୀର୍ଘ ପାଂଚ ଶହ ବର୍ଷର ଅଭିଜ୍ଞ ଯାତ୍ରା ଆମକୁ ବିକାଶର ବାଇଶି ପାହାଚ ପର୍ଯ୍ୟନ୍ତ ନେଇ ଆସିଛି । ପ୍ରାକୃତିକ ଓ ନୈସର୍ଗିକ ଶୋଭା ସୌନ୍ଦର୍ଯ୍ୟର ଗନ୍ତାଘର ଓଡିଶା । ମରାଳ ମାଳିନୀ ନୀଳାମ୍ବୁ ଚିଲିକାର ଅନିନ୍ଦ୍ୟ ରୂପମାଧୁରୀ, ବିଶ୍ୱ ବିସ୍ମୟ ଭିତରକନିକାର ଜୈବ ବିବିଧତା ପର୍ଯ୍ୟଟନ ଇତିହାସ ପୃଷ୍ଠାରେ ଖ୍ୟାତିଲାଭ କରିଅଛି । ଶ୍ରୀଜଗନ୍ନାଥ ଐତିହ୍ୟ ଓ ସଂସ୍କୃତିର ଜୟଯାତ୍ରା ଏବଂ ବିଶ୍ୱସ୍ତରୀୟ ଖୋଲାମଂଚର

ଯାତ୍ରା ଧନୁଯାତ୍ରା ଧାର୍ମିକ, ସାମାଜିକ, ସାଂସ୍କୃତିକ ପରମ୍ପରାର ଆଲେଖ୍ୟ ବହନ କରିପାରିଛି ।

ସୁଦୃଢ ଓଡ଼ିଶା ଓ ସଶକ୍ତ ଓଡ଼ିଶା ଗଠନ ପାଇଁ ପାଠାଗାର ଓ ପୁସ୍ତକ ମେଳାର ଗୁରୁତ୍ୱ ବୃଦ୍ଧି ପାଇଛି । ଓଡ଼ିଆ ମଧୁର ଓ ଓଡ଼ିଶା ମଧୁର, ଯେଉଁଠି ଐତିହାସିକ କଳିଙ୍ଗ ବାଲିଯାତ୍ରା ଯାହା ଆମ ସ୍ୱର୍ଣ୍ଣମୟ ଐତିହ୍ୟ ପରମ୍ପରାକୁ ଉଜ୍ଜୀବିତ କରୁଛି । ଓଡ଼ିଆ ସାହିତ୍ୟ ଓ ସଙ୍ଗୀତର ଆଦ୍ୟ ଝଙ୍କାର ଚର୍ଯ୍ୟାଗୀତିକା ହେଉଛି ଓଡ଼ିଆ ଭାଷାର ପ୍ରଥମ ଗୀତିକବିତା ଏବଂ ରୁଦ୍ର ସୁଧାନିଧି ହେଉଛି ପଦ୍ୟାତ୍ମକ ଗଦ୍ୟର ପ୍ରଥମ ଅଙ୍କୁର । ପ୍ରାଚୀ ନଦୀରେ ଶିଳାଯାତ୍ରା ଯେଉଁଠି ଥରେ ଶାଶ୍ୱତ ଦୃଷ୍ଟି ପଡ଼ିଲେ ଫେରିବା ଏତେ ସହଜ ନୁହେଁ । ମନ ଲାଖିଯାଏ ଶିଳା କାବ୍ୟର ପୃଷ୍ଠାରେ ପୃଷ୍ଠାରେ । ଓଡ଼ିଶାର ବନ୍ଦର ନଗରୀ ପାରାଦ୍ୱୀପ ଓ ବନ୍ଦର କୋଣାର୍କର ମୁଖଶାଳା ଧାମରା ଆମ ରାଜ୍ୟର ଶ୍ରୀବୃଦ୍ଧି ସାଧନର କୋଷାଗାର । ହୃଦୟ ସହିତ ହୃଦୟର ସେତୁ ବନ୍ଧ ନିର୍ମାଣ କରେ ଏ ମାଟିର ମମତା ମଂଜୁଳ ଭାଷା, ଭାଷା, ସାହିତ୍ୟର ବିକାଶ ଏ ଜାତିର ପରିଚୟ । ଏଇ ପରିଚୟକୁ ନେଇ ଫୁଟିଉଠେ ଜାତିର ସ୍ୱାଭିମାନ । ଗୋଟିଏ ଜାତିର ଶକ୍ତି ଓ ସାମର୍ଥ୍ୟ ହିଁ ସାହିତ୍ୟ । ଆଉ ସେଇ ସାହିତ୍ୟ ତା'ର ସମ୍ପତ୍ତି ଏ ମାଟିର ସ୍ଥିତି ଭିତ୍ତି ଓ ଭାରତୀ ନୂତନ ନୂତନ ଅନ୍ୱେଷା ପଥରେ ଆଗେଇ ଚାଲିଛି । ଯାହାର ଅତୀତ ଥାଏ, ତାହାର ବର୍ତ୍ତମାନ ଥାଏ, ଥାଏ ମଧ ଭବିଷ୍ୟତ । ଅତୀତ ଯାହାର ଗୌରବମୟ ଐତିହ୍ୟ ବିମଣ୍ଡିତ, ଇତିହାସ ନିର୍ଜିତ, ତାହାର କେବେ ବିଲୟ ହୁଏ ନାହିଁ ।

ଏ ବୀର ଓଡ଼ିଆ ଜାତିର ଥିଲା କାଳାତୀତ ଇତିହାସ, ହିରଣ୍ମୟ ପରମ୍ପରା ଓ ସ୍ୱର୍ଣ୍ଣିମ ଐତିହ୍ୟ ଏବଂ ବୈଭବମୟ ସଂସ୍କୃତି । ଖାରବେଳଙ୍କ ସମୟରେ କଳିଙ୍ଗର ହେଲା ନବନିର୍ମାଣ । ସୋମବଂଶ ସମୟରେ କଳିଙ୍ଗ ହେଲା ଉତ୍କଳ । ଗଜପତି କପିଳେନ୍ଦ୍ର ଦେବଙ୍କ ସମୟରେ ଉତ୍କଳ ହେଲା ଓଡ଼ିଶା । ଜନ୍ ବୀମ୍ସ ଓଡ଼ିଆ ଭାଷାକୁ କେବଳ ସ୍ୱୀକାର କଲେ ନାହିଁ, ପ୍ରମାଣ କରିଦେଲେ ଏ ଭାଷାର ପ୍ରାଚୀନତାକୁ, ଏ ସାହିତ୍ୟର ସାରସ୍ୱତ ମର୍ଯ୍ୟାଦାକୁ, ସ୍ୱାଧୀନତାର ସୁଦୀର୍ଘ ଅଷ୍ଟ ଦଶକ ପରେ ଓଡ଼ିଶା ସରକାର, ସୁସ୍ଥ ଓଡ଼ିଶା ସୁଖୀ ଓଡ଼ିଶା, ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା, କୃଷକଙ୍କ ଉନ୍ନତି ପାଇଁ କାଳିଆ ଯୋଜନା, ଗାଁ ଓ ପଞ୍ଚାୟତର ଉନ୍ନତି ନିମନ୍ତେ ଆମ ଗାଁ ଆମ ବିକାଶ, ପିଠା କାର୍ଯ୍ୟକ୍ରମ, ମିଶନ ଶକ୍ତି, ପକ୍କାଘର ଯୋଜନା, ନିଜସ୍ୱ ଖାଦ୍ୟ ସୁରକ୍ଷା ଯୋଜନା, ନିର୍ମାଣ ଶ୍ରମିକ କଲ୍ୟାଣ ବୋର୍ଡ, ମଧୁବାବୁ ପେନସନ ଯୋଜନା, ବରିଷ୍ଠ ବୁଣାକାର ସହାୟତା ଯୋଜନା, ସହାୟ, ଆମ କ୍ଲିନିକ, ନିର୍ମଳ, ସୁନେତ୍ର, ସଂପୂର୍ଣ୍ଣା ସୁରକ୍ଷା କବଚ, ଖୁସୀ, ସନ୍ଥକବି ଭୀମଭୋଇ ମେଡିକାଲ କଲେଜ, ବ୍ୟାସକବି ଫକୀର ମୋହନ ମେଡିକାଲ କଲେଜ, ପଣ୍ଡିତ ରଘୁନାଥ ମୁର୍ମୁ ମେଡିକାଲ କଲେଜ, ସହିଦ୍ ଲକ୍ଷ୍ମଣ ନାୟକ ମେଡିକାଲ କଲେଜ, ବିଜୁ ଶିଶୁ ସୁରକ୍ଷା ଯୋଜନା, ମାଳତୀ ଦେବୀ ପ୍ରାକ୍ ବିଦ୍ୟାଳୟ ପରିଧାନ ଯୋଜନା, ମମତା ଯୋଜନା, କଳିଙ୍ଗ ଶିକ୍ଷା ସାଥୀ ଯୋଜନା, ମୁଖ୍ୟମନ୍ତ୍ରୀ ମେଧାବୃତ୍ତି ଯୋଜନା, ବିଜୁ ଯୁବ ସଶକ୍ତିକରଣ ଯୋଜନା, ଅନ୍ୱେଷା, ଆକାଙ୍କ୍ଷା, ବିଜୁ ଯୁବ ବାହିନୀ, ଜରା ନିବାସ, ବାଣୀଶ୍ରୀ ଶିକ୍ଷା ବୃତ୍ତି, ଜାଗା ମିଶନ, ଆମ ସହର ଆମ ଉନ୍ନତି, ମୋ ବସ୍, ମୋ ସାଇକେଲ, ବସୁଧା, ମେକ୍ ଇନ୍ ଓଡ଼ିଶା, ସ୍କିଲ୍ଡ ଇନ୍ ଓଡ଼ିଶା, ଓଡ଼ିଶା ଦକ୍ଷତା ବିକାଶ, ଆମ ସଂସ୍କୃତି ଆମ ଐତିହ୍ୟ, ଓଡ଼ିଶା ଭର୍ଚୁଆଲ ଏକାଡେମୀ, ମୁଖ୍ୟମନ୍ତ୍ରୀ କଳାକାର ସହାୟତା ଯୋଜନା, ହକି କମ୍ପ୍ଲେକ୍ସ ପ୍ରଭୃତି ଅନେକ ଜନ କଲ୍ୟାଣ ଯୋଜନା ସମୃଦ୍ଧ ଓଡ଼ିଶାର ଉଜ୍ଜ୍ୱଳ ସମ୍ଭାବନା, ଅତୀତର ଆଲବମ୍‌ରେ ସ୍ମୃତିର ସୁରଭି ଓଡ଼ିଶାର ସୁନେଲି ଭବିଷ୍ୟତର ରଙ୍ଗୀନ ମାନଚିତ୍ର ଅଙ୍କନ କରିଛି । କବି ବାଞ୍ଛାନିଧି ମହାନ୍ତିଙ୍କ ଭାଷାରେ–

''କହ କେଉଁ ଜାତି ପାଇଛି ମୁକତି
କରି ହୁରି ହାରି ଗୁହାରି
ପାଇଛି କେ ସୁଖ ଲିଭାଇଛି ଦୁଃଖ
ମାଗି ମାଗି ପଥ ଭିକାରୀ ।''

ଏହି ଯୁଗାନ୍ତକାରୀ କବିତା ଆଗାମୀ ଓଡ଼ିଶାର ଶେଷ ଚିତା, ତେବେ ପୂର୍ଣ୍ଣ ହେବ ଏ ମାଟିର ଭାଷା, ସୁଜଳା, ସୁଫଳା, ସମୃଦ୍ଧ ଓଡ଼ିଶା । ଓଡ଼ିଆ କବିଟିଏ ଶ୍ରୀଜଗନ୍ନାଥଙ୍କ

ନିକଟରେ ପ୍ରାର୍ଥନା କରେ – ମୋ ଆଖି ଲୁହରେ ଲେଖୁଛି କବିତା ''ଆଶା ନିରାଶାର କଥା, ଗରୁଡ ପଛରୁ ଶୁଣାଇବି ଥରେ ମଣିଷ ମନର ବ୍ୟଥା ।'' ଫଳରେ ସାହିତ୍ୟ–ସଂସ୍କୃତି କ୍ଷେତ୍ରରେ ନବଜାଗରଣ ଆସିଛି । ଆଜି ସମୟ ବଦଳିଛି, ବଦଳିଛି ଓଡିଶାର ନକ୍ସା । ଆଜି ମନେ ପଡୁଛି କବି ବିଦ୍ୟୁତ ପ୍ରଭାଙ୍କ କବିତା – ''ଚୋରା ଚଇତାଳି ଚପଳ ବିଳାସେ ଭାସିଲେ କି ହେବ କବି ନ ଫୁଟିଲା ଯଦି ଲେଖନୀରେ ତବ ବ୍ୟଥାର କରୁଣ ଛବି ।'' କବି ବସନ୍ତ ମୁଦୁଲିଙ୍କ ଭାଷାରେ– ''ଯେତେ ଗୁଳି ଅଛି ଅଜାଡି ଦିଅ ମୋ ଛାତିରେ, ଯେତେ ପ୍ରେମ ଅଛି ଅଜାଡି ଦିଅ ଏ ମାଟିରେ ।'' ଓଡିଆ ସାହିତ୍ୟ ଇତିହାସରେ ମୁଗ୍ଧ ବନ୍ଦାପନା କରିବା ପାଇଁ ସରସ୍ୱତୀଙ୍କ କୃପାରୁ କେତେକ ସାରସ୍ୱତ ସାଧକ ନିଜର ପ୍ରତିଭା ବଳରେ ଓଡିଆ ବାକ୍ ଭଣ୍ଡାରକୁ କାଳ କାଳକୁ ସମୁଜ୍ଜ୍ୱଳ କଲା ଭଳି ପୁସ୍ତକ ଉପହାର ଦେଇଛନ୍ତି । ଯଥା – ସାରଳା ମହାଭାରତ, ଭାଗବତ, ବୈଦେହୀଶ ବିଳାସ, ରସକଲ୍ଲୋଳ, ମହାଯାତ୍ରା, ତପସ୍ୱିନୀ, ଛ' ମାଣ ଆଠ ଗୁଣ୍ଠ, ମାଟିର ମଣିଷ, ମାଟିମଟାଳ, ନୀଳଶୈଳ, କା, ଅମାବାସ୍ୟାର ଚନ୍ଦ୍ର, ଯାଜ୍ଞସେନୀ ଭଳି ଅମର ସୃଷ୍ଟି ଓଡିଆ ଭାଷା ସାହିତ୍ୟକୁ ବଂଚାଇ ଦିଏ ।

ଓଡିଆ ସାହିତ୍ୟର ପଠନ ଭୂମି ଆନ୍ତର୍ଜାତୀୟ ଲେଖକ ଓ କବି ଫ୍ରୀଡ୍ ଶିଲାର, ଏମିଲି ଜୋଲା, ଓସ୍କାର ୱାଇଲ୍ଡ, ମାଥ୍ୟୁ, ଆର୍ନୋଲ୍ଡ, ଏଫହଲ, ଏ.ବି.କିଥ୍, ଆଲେକ୍ସ କମ୍ଫର୍ଟ, ସେକ୍ସପିଅର, ବେନିଡୋଟ କ୍ରୋଚେ, ଗେଟେ, ଦାନ୍ତେ, ଟଲଷ୍ଟୟ, ହ୍ୱାଇଟ୍ ହେଡ୍, ସମରସେଟ୍ ମମ୍, ଜି.ଆପୋଲେ ନେୟାର, ଅକ୍ଟାଭିଓ ପାଜ, ପ୍ରେମଚାନ୍ଦ, ରବିନ୍ଦ୍ର ନାଥ, ଲାଲା ରାମନାରାୟଣ ରାୟ, ବିଜୟ ଚନ୍ଦ୍ର ମଜୁମଦାର ପ୍ରଭୃତିଙ୍କ ଦୁର୍ଗମ ସାହିତ୍ୟ ସରଣୀକୁ ଅତିକ୍ରମ କରିଛି । ଓଡିଶାର ସୁନ୍ଦର ଶୋଭନୀୟ ପ୍ରତିଛବି କୋଟି ଜନମନ ଅଧିକାରର ବଳିଷ୍ଠ ଉଦାହରଣ ପାଲଟିଛି । ଫଳରେ ଏ ମାଟିର ଲୁହର ଓଜନ ଲୁହାଠୁ ବେଶି ପ୍ରମାଣ ହୋଇଛି । ସମୃଦ୍ଧ ଓଡିଶାର ସୁବର୍ଣ୍ଣ କଥା ଓ ଗାଥା ବିଶ୍ୱ ବସୁଧାର ଭୌଗୋଳିକ ଓ ସାଂସ୍କୃତିକ ସୀମା ଡେଇଁ ଯାଇଛି । ଏଇ ଆଲେଖ୍ୟ ଓଡିଶା ଓ ଓଡିଆଙ୍କୁ ବିଶ୍ୱ ଦରବାରରେ ପହଁଚାଇ ଓଡିଆ ସାହିତ୍ୟ ଇତିହାସକୁ ଏକ ନୂଆ ପରିଚୟ ପ୍ରଦାନ କରିବ ଓ ସାମ୍ପ୍ରତିକ କଥା ଶିଳ୍ପରେ ନୀଳାଭ ଦିଗନ୍ତ ସୃଷ୍ଟି କରିବ । ଏଥିରେ ସନ୍ଦେହ ନାହିଁ । ଆଜି ଜାତୀୟ ସ୍ତରରେ ମାଣବସା ଗୁରୁବାର, ଛଉ ନୃତ୍ୟ ଓ ରାବଣ ଛାୟା ଐତିହ୍ୟ ତାଲିକାରେ ସ୍ଥାନ ପାଇଛି ।

ଏକଦା ଏ ରାଜ୍ୟ ସ୍ୱତନ୍ତ୍ରତା ପରିଚୟ ପାଇଁ ଉତ୍କଳଗୌରବ ମଧୁବାବୁ କନିକା ରାଜବାଟୀରେ ରାଜାଙ୍କ ସହଯୋଗ କାମନା କରିଥିଲେ ଓ ବୃହତ୍ତର ସମୃଦ୍ଧ ଓଡିଶା ଗଠନ ପାଇଁ ବିଜୁବାବୁ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଂଜଦେଓଙ୍କ ସହାୟତା ଲୋଡିଥିଲେ । ସମୃଦ୍ଧ ଓଡିଶା ଗଠନ କ୍ଷେତ୍ରରେ କନିକା ଓ କନିକାର ପ୍ରାଣକେନ୍ଦ୍ର ଚାନ୍ଦବାଲିର ଅବଦାନ ସମ୍ପର୍କରେ କବିଶେଖର ଚିନ୍ତାମଣି ମହାନ୍ତି ତାଙ୍କର ମହୋଦଧି କାବ୍ୟରେ ଉଲ୍ଲେଖ କରିଛନ୍ତି – ''ବହିତ୍ର ବନ୍ଦିତ ରମ୍ୟ ଚାନ୍ଦବାଲି, ବାଣିଜ୍ୟ ସଂସ୍କୃତି ରଖିଛି ସମ୍ଭାଳି ।'' ସଫଳତା ଓ ସାର୍ଥକତା ଏବଂ ସଂସ୍କୃତି ଓ ସଂସ୍କାରର କର୍ମଭୂମି ଓଡିଶା, ଯେଉଁଠି ଜଗନ୍ନାଥ ହିଁ ଇତିହାସ । ଯେତେବେଳେ ବର୍ଷା ଓ ବସନ୍ତ ଏ ମାଟିକୁ ଛୁଏଁ ସେତେବେଳେ କବିଟିଏ କାନ୍‌ଭାସରେ ରୂପ ଦେଇ କାଳଜୟୀ ସାରସ୍ୱତ ସ୍ତୁତି ମହ୍ଲାର ଲେଖି ବସେ । ଐତିହ୍ୟର ଜୟଯାତ୍ରା ରଥଯାତ୍ରା, ଉତ୍କଳୀୟ ନୌବାଣିଜ୍ୟର ଜଳଯାତ୍ରା, ଯେଉଁ ଜାତିର ଇତିହାସ, ସେ ଜାତିର କଥା ଓ ଗାଥା ସମଗ୍ର ମାନବ ସଭ୍ୟତା ଓ ସଂସ୍କୃତିର ପରିଭାଷା ଓଡିଶା !!!

ଗୋପବନ୍ଧୁ ସାହିତ୍ୟ ସଂସଦ
ଚାନ୍ଦବାଲି, ଜିଲ୍ଲା– ଭଦ୍ରକ





# 'ବନ୍ଦେ ଉତ୍କଳ ଜନନୀ'ର ସ୍ରଷ୍ଟା କାନ୍ତକବି

ଗୁରୁକଲ୍ୟାଣ ମହାପାତ୍ର

ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ରଚିତ 'ବନ୍ଦେ ଉତ୍କଳ ଜନନୀ' ସଙ୍ଗୀତକୁ ଯେତେବେଳେ ରାଜ୍ୟ ସଙ୍ଗୀତର ମାନ୍ୟତା ପ୍ରଦାନ କରିବା ପାଇଁ ଚଳିତ ବର୍ଷ ତା ୦୭.୦୬.୨୦୨୦ରେ ସ୍ୱତନ୍ତ୍ର ମନ୍ତ୍ରିମଣ୍ଡଳର ବୈଠକରେ ନିଷ୍ପତ୍ତି ନେଲେ, ଓଡ଼ିଶାବାସୀ ଆନନ୍ଦିତ ହୋଇଥିଲେ । ଓଡ଼ିଶା ପାଇଁ ତାହା ଥିଲା ଏକ ଐତିହାସିକ ଦିବସ ।

ଏଥିପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ଯେଉଁ ପ୍ରେସ୍ ବିଜ୍ଞପ୍ତି ପ୍ରକାଶ ପାଇଥିଲା, ସେଥିରେ ପ୍ରଥମରୁ ଉଲ୍ଲେଖ ରହିଥିଲା– 'ବନ୍ଦେ ଉତ୍କଳ ଜନନୀ କୀର୍ତ୍ତିମାଳିନୀ ଉତ୍କଳ ଜନନୀଙ୍କର ପବିତ୍ର ଆବାହନୀ ସଙ୍ଗୀତ । ଓଡ଼ିଆ ଜାତିର ଅସ୍ମିତା ଓ ସ୍ୱାଭିମାନର ସଙ୍ଗୀତ । ନୈସର୍ଗିକ ପ୍ରାକୃତିକ ଶୋଭା, ଅନନ୍ୟ କୀର୍ତ୍ତିରାଜି ଓ ଉତ୍କୃଷ୍ଟ କଳା ବିମଣ୍ଡିତ, ଉତ୍କଳ ଜନନୀଙ୍କର ଜୟଗାନ ଏହି ସଙ୍ଗୀତକୁ ଅମୃତମୟ କରିବା ସହ ଓଡ଼ିଶାର ଗୌରବକୁ ବିଶ୍ୱବ୍ୟାପୀ କରିବା ପାଇଁ ପ୍ରେରଣା ଦେଇ ଆସିଛି । ଦେଶାତ୍ମବୋଧ ଓ ଜାତୀୟତାବୋଧ ହେଉଛି ଏହି ସଙ୍ଗୀତର ଅନ୍ତଃସ୍ୱର ।

କୋଭିଡ୍ ଯୋଦ୍ଧାଙ୍କୁ ଉତ୍ସାହିତ କରିବା ପାଇଁ ୨୦୨୦ ମଇ ୩୦ ତାରିଖ ଶନିବାର ସନ୍ଧ୍ୟା ୫ ଘଟିକା ୩୦ ମିନିଟ୍ ସମୟରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନିବେଦନକ୍ରମେ ଦେଶ ବିଦେଶର କୋଣ ଅନୁକୋଣରେ ରହୁଥିବା ଓଡ଼ିଆ ଭାଇଭଉଣୀମାନେ ଯେଭଳି ଏକତାନରେ 'ବନ୍ଦେ ଉତ୍କଳ ଜନନୀ' ସଙ୍ଗୀତ ଗାନ କରି ଜାତି ପ୍ରେମର ନିଦର୍ଶନ ଦେଖାଇଛନ୍ତି, ତାହା ଅତୁଳନୀୟ । ଉତ୍କଳ ଜନନୀଙ୍କ ବନ୍ଦନାରେ ସେଦିନ ଗାଁ, ସହର, ନଗର, ପଲ୍ଲୀ ମୁଖରିତ ହୋଇ ଉଠିଥିଲା । ସାଢ଼େ ଚାରିକୋଟି ଓଡ଼ିଆଙ୍କ କଣ୍ଠରେ ଥିଲା ଗୋଟିଏ ସ୍ୱର, ଉତ୍କଳ ଜନନୀଙ୍କର ଜୟଗାନ 'ବନ୍ଦେ ଉତ୍କଳ ଜନନୀ' । ଏଥିପାଇଁ ରାଜ୍ୟ କ୍ୟାବିନେଟ ଓଡ଼ିଶାସମେତ ଦେଶ ବିଦେଶରେ ରହୁଥିବା ଆମର ଓଡ଼ିଆ ଭାଇଭଉଣୀମାନଙ୍କୁ ଧନ୍ୟବାଦ ଜଣାଉଛି । ବର୍ତ୍ତମାନର କଠିନ ପରିସ୍ଥିତିରେ ଏହି ସଙ୍ଗୀତ ଆମ ସଂକଳ୍ପକୁ ଆହୁରି ଦୃଢ଼ କରିବା ସହିତ ଆଗକୁ ବଢ଼ିବା ପାଇଁ ପ୍ରେରଣା ଦେଇଛି । ସାରା ଓଡ଼ିଶା ଆଜି ଏହି ସଙ୍ଗୀତ ତାନରେ ଏକ୍‌ଜୁଟ୍ ହୋଇଛି । ଏ ଜାତି ଏକ ମନ, ଏକ ପ୍ରାଣ ହୋଇ ଜାଗି ଉଠିଛି ।

୨୦୨୦ ମଇ ୩୦ ତାରିଖ ସନ୍ଧ୍ୟା ୫ ଘଟିକା ୩୦ ମିନିଟ୍ ସମୟରେ ସାରା ବିଶ୍ୱର କୋଣ ଅନୁକୋଣ ଉତ୍କଳ ଜନନୀଙ୍କ ବନ୍ଦନାରେ ଝଂକୃତ ହୋଇ ଉଠିଥିଲା । ଏହି ବିରଳ ଅନୁଭବକୁ ସଦା ସତେଜ ରଖିବା ପାଇଁ ୧୦ ଲକ୍ଷରୁ ଊର୍ଦ୍ଧ୍ୱ ଓଡ଼ିଆ ଭିଡ଼ିଓ ମାଧ୍ୟମରେ ଚିତ୍ର ଉତ୍ତୋଳନ କରି ଓଡ଼ିଶା ସରକାରଙ୍କ ପାଖକୁ ପ୍ରେରଣ କରି ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କର ମହତ ଉଦ୍ଦେଶ୍ୟ ପ୍ରତି ଦୃଢ ସମର୍ଥନ ଜ୍ଞାପନ କରିଛନ୍ତି । ସେଥିପାଇଁ ରାଜ୍ୟ କ୍ୟାବିନେଟ ସମସ୍ତଙ୍କୁ ଧନ୍ୟବାଦ ଜଣାଉଛି ।'

'ଉତ୍କଳ ସମ୍ମିଳନୀ' ଗଠିତ ହେବା ପରେ ୧୯୧୨ରେ ବାଲେଶ୍ୱରର ସ୍ୱତନ୍ତ୍ର ଅଧିବେଶନରେ

ଉତ୍କଳଗୌରବ ମଧୁସୂଦନ ଦାସ ଓ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ନିର୍ଦ୍ଦେଶକ୍ରମେ 'ବନ୍ଦେ ଉତ୍କଳ ଜନନୀ' ସଙ୍ଗୀତକୁ ଉତ୍କଳ ଜନନୀ ବୋଲି କୁହାଯାଇ ସମ୍ମିଳନୀର ଆଦ୍ୟରୁ ଏହାକୁ ଆବାହନୀ ସଙ୍ଗୀତ ଭାବେ ଗାନ କରାଯାଉଥିଲା । ପ୍ରାୟ ଶତାଧିକ ବର୍ଷ ପରେ, ସମଗ୍ର ବିଶ୍ୱରେ କୋଭିଡ ମହାମାରୀ କାୟା ବିସ୍ତାର କରି ଆତଙ୍କ ସୃଷ୍ଟି କରି ଚାଲିଥିବା ବେଳେ, ଉଭୟ କୋଭିଡ୍ ଯୋଦ୍ଧାଙ୍କୁ ଉତ୍ସାହିତ କରିବା ସହିତ କୋଭିଡ ପୀଡ଼ିତ ରୋଗୀଙ୍କୁ ଆଶ୍ୱାସନା ଦେବା ଲାଗି ଆମର ଲୋକପ୍ରିୟ ମୁଖ୍ୟମନ୍ତ୍ରୀଙ୍କର ଏହି ସଙ୍ଗୀତକୁ ସମୂହଭାବେ ବିଶ୍ୱର ପ୍ରତ୍ୟେକ ଓଡ଼ିଆ ଏକ ସମୟରେ ଗାନ କରିବା ପାଇଁ ନିର୍ଦ୍ଦେଶ ଦେବା ଏକ ଅଭିନବ ପରିକଳ୍ପନା ବୋଲି ମନେ ହୋଇଥିଲା ।

ଏହି ସଙ୍ଗୀତର ଅପୂର୍ବ ଶବ୍ଦ ସଂଯୋଜନା ସହିତ ଚିତ୍ତାକର୍ଷକ ଭାବ କାନ୍ତକବିଙ୍କୁ କାଳଜୟୀ କରିପାରିଛି । ଉତ୍କଳ ବା ଓଡ଼ିଶାର ମାଟି, ପାଣି, ପବନ, ବ୍ୟକ୍ତି ଓ ବ୍ୟକ୍ତିତ୍ୱ ଆଧାରରେ କାନ୍ତକବି ଏକ ଦିବ୍ୟ ମୁହୂର୍ତ୍ତରେ ଉତ୍କଳ ଜନନୀଙ୍କର ଏହି ବନ୍ଦନା ରଚନା କରିଛନ୍ତି ବୋଲି କାନ୍ତିକବିଙ୍କର ଦୁଇପୁତ୍ର ନିତ୍ୟାନନ୍ଦ ଓ ଗୌରଚନ୍ଦ୍ର (ଉଭୟ ଏବେ ସ୍ୱର୍ଗରେ) ଏ ଲେଖକ ନିକଟରେ ପ୍ରକାଶ କରିଥିଲେ ।

ଏ ଲେଖକର ସୌଭାଗ୍ୟ ଯେ ଅତୀତରେ ସେ 'ଉତ୍କଳ ପ୍ରସଙ୍ଗ' ସମ୍ପାଦନା କରିବାର ସୁଯୋଗ ଲାଭ କରିଥିଲା । ମାତ୍ର ୧୯୯୯ରେ ଥରେ ସୂଚନା ଓ ଲୋକ ସମ୍ପର୍କ ବିଭାଗକୁ କୌଣସି କାର୍ଯ୍ୟରେ ଏ ଲେଖକ ଯାଇଥିବା ବେଳେ ତତ୍କାଳୀନ ସମ୍ପାଦକ, ବିଶିଷ୍ଟ ସାହିତ୍ୟିକ ଓ ସାମ୍ବାଦିକ ଶ୍ରୀ ମହେଶ୍ୱର ମୂଳିଆ ମୋତେ ଦେଖି ତାଙ୍କ କାର୍ଯ୍ୟାଳୟକୁ ଡାକିଲେ । 'ଓଡ଼ିଶା ରିଭ୍ୟୁ'ର ତତ୍କାଳୀନ ସମ୍ପାଦକ ପ୍ରଫେସର ରାଜକିଶୋର ମିଶ୍ର ମଧ୍ୟ ସେଠାରେ ଉପସ୍ଥିତ ଥିଲେ । 'ଉତ୍କଳ ପ୍ରସଙ୍ଗ'ରେ ଉତ୍କଳ ଦିବସ ବିଶେଷାଙ୍କରେ ଯେଉଁ 'ବନ୍ଦେ ଉତ୍କଳ ଜନନୀ' ସ୍ଥାନିତ ହେଉଥିଲା, ତହିଁରେ 'ଘନ ବନ ଭୂମି ରାଜିତ ଅଙ୍ଗେ' ଠିକ୍ କି 'ଘନ ଘନ ବନଭୂମି ରାଜିତ ଅଙ୍ଗେ' ଠିକ୍ ବୋଲି ସେ ଦୁହେଁ ପଚାରିଲେ । ମୁଁ କହିଥିଲି, 'ଘନ ବନ ଭୂମି' ଠିକ୍ ବୋଲି ମନେ ହେଉଛି । ତଥାପି ସନ୍ଦେହ ମୋଚନ ପାଇଁ ମୋର ପିତୃବ୍ୟ ନିତ୍ୟାନନ୍ଦ ଓ ପିତା ଗୌରଚନ୍ଦ୍ରଙ୍କୁ ପଚାରିବାକୁ କହିଲି । ପିତା ଗୌରଚନ୍ଦ୍ର ଭଦ୍ରକରେ ରହୁଥାନ୍ତି । ତାଙ୍କୁ ଫୋନ୍‌ରେ ପଚାରିବାରୁ ସେ କହିଲେ ଯେ 'ଘନ ବନଭୂମି' ଠିକ୍ । ତେବେ ଭାଇ (ନିତ୍ୟାନନ୍ଦ)ଙ୍କୁ ପଚାରି ଦିଅନ୍ତୁ ବୋଲି କହିଥିଲେ । ତେଣୁ ଶ୍ରୀ ମୂଳିଆ ଓ ଏ ଲେଖକ ଭୁବନେଶ୍ୱରରେ ରହୁଥିବା ନିତ୍ୟାନନ୍ଦ ମହାପାତ୍ରଙ୍କୁ ଭେଟି ପଚାରିଲୁ । ସେ କହିଲେ, ମାତ୍ରାବୃତ୍ତ ଛାନ୍ଦ ଅନୁଯାୟୀ 'ଘନ ବନଭୂମି' ଠିକ୍ । ମାତ୍ର ଗୀତ ଗାନ କଲାବେଳେ କଣ୍ଠଶିଳ୍ପୀମାନେ ତାହାକୁ ମାନୁ ନାହାନ୍ତି । ଉଲ୍ଲେଖନୀୟ ଯେ କାନ୍ତକବିଙ୍କର ପୁତ୍ରଦ୍ୱୟ ଉଭୟ ସାହିତ୍ୟିକ ଓ ସ୍ୱାଧୀନତା ସଂଗ୍ରାମୀ ଭାବେ ଓଡ଼ିଶାରେ ପ୍ରତିଷ୍ଠିତ । କାନ୍ତକବିଙ୍କର ଗ୍ରନ୍ଥାବଳୀ, ଯାହା ଦୁଇ ଭାଗରେ ପ୍ରକାଶ ପାଇଛି 'କାନ୍ତ ସାହିତ୍ୟ ମାଳା' ଭାବରେ– ୧୯୬୪ରେ, ତାହାର ସମ୍ପାଦନା ଓ ସଂକଳନ ମଧ୍ୟ ସେମାନେ କରିଥିଲେ ଏବଂ କଟକର 'ଓଡ଼ିଶା ବୁକ୍ ଏମ୍ପୋରିଅମ' ତାହାକୁ ପ୍ରକାଶ କରିଥିଲେ । କାନ୍ତକବିଙ୍କୁ ପଚାରି ଓ ପରାମର୍ଶ କରି ତାଙ୍କର ପୁତ୍ରଦ୍ୱୟ ଗ୍ରନ୍ଥାବଳୀର ସମ୍ପାଦନା କରିଥିଲେ ହେଁ, ସେଥିରେ ସେମାନଙ୍କ ନାମୋଲ୍ଲେଖ କରିନଥିଲେ । ଅବଶ୍ୟ କାନ୍ତକବି ଜୀବଦ୍ଦଶାରେ ତାଙ୍କର ଗ୍ରନ୍ଥାବଳୀ ଦେଖିପାରି ନଥିଲେ । କାରଣ ତାଙ୍କର ଦେହାନ୍ତ ହୋଇଥିଲା ୧୯୫୩ ଫେବୃଆରୀ ୨୪ ତାରିଖରେ ।

କାନ୍ତକବି ଉଭୟ ଭକ୍ତି ଓ ଦେଶଭକ୍ତିମୂଳକ ସଙ୍ଗୀତ ଲେଖି ଓଡ଼ିଶାରେ ପ୍ରସିଦ୍ଧି ଲାଭ କରିଥିଲେ । ତେଣୁ ରାଜ୍ୟ ସୂଚନା ଓ ଲୋକସମ୍ପର୍କ ବିଭାଗ ଓ ରାଜ୍ୟ ଭାଷା, ସାହିତ୍ୟ ଓ ସଂସ୍କୃତି ବିଭାଗର ମିଳିତ ଆନୁକୂଲ୍ୟରେ ରାଜଧାନୀ ଭୁବନେଶ୍ୱରରେ କାନ୍ତକବିଙ୍କ ଶ୍ରାଦ୍ଧ ଦିବସରେ 'କାନ୍ତ ସଙ୍ଗୀତ ସନ୍ଧ୍ୟା' କରାଯିବାର ଆବଶ୍ୟକତା ଅନୁଭବ କରାଯାଉଛି ଏବେ ।

ଘର ନଂ– ଭି.ଏ– ୨୯/୩, ୟୁନିଟ୍–୨
ଭୁବନେଶ୍ୱର, ପିନ୍–୭୫୧୦୦୯

# ଆମ ସଂସ୍କୃତିରେ ପ୍ରଥମାଷ୍ଟମୀ ଓ ଧନୁ ସଂକ୍ରାନ୍ତି

ଡକ୍ଟର ଶ୍ରୀହରି ପଣ୍ଡା

ଚାନ୍ଦ୍ରମାସ ମଧ୍ୟରେ ମାର୍ଗଶିର ପ୍ରଥମ ମାସ ହୋଇଥିବାରୁ ଏବଂ ଏହି ମାସର ମାହାତ୍ମ୍ୟ ପୁରାଣ ଓ ଧର୍ମଶାସ୍ତ୍ରମାନଙ୍କରେ କୀର୍ତ୍ତିତ ହୋଇଛି । ଏହି ମାସର ପ୍ରାଧାନ୍ୟ ଅନେକ । ଭଗବାନ ଶ୍ରୀକୃଷ୍ଣ ବିଭୂତି ଯୋଗରେ ଏହି ମାସ ସମ୍ପର୍କରେ କହିଛନ୍ତି,''ମାସାନାଂ ମାର୍ଗଶିର୍ଷୋଽହଂ ଋତୁନାଂ କୁସୁମାକରଃ''ଅର୍ଥାତ୍ ମୁଁ ମାସମାନଙ୍କ ମଧ୍ୟରେ ମାର୍ଗଶିର ଏବଂ ଋତୁମାନଙ୍କ ମଧ୍ୟରେ ଋତୁରାଜ ବସନ୍ତ । ପୂର୍ବେ ମାର୍ଗଶିର ମାସରୁ ହିଁ ବର୍ଷର ଗଣନା ଆରମ୍ଭ ହେଉଥିଲା । ସେଇଥିଲାଗି ପ୍ରଥମ ଶବ୍ଦ ବ୍ୟବହୃତ ହୋଇଛି । ସେଥିପାଇଁ ଏହି ମାସର ଅଷ୍ଟମୀକୁ ପ୍ରଥମାଷ୍ଟମୀ କୁହାଯାଏ । ଆମ ସଂସ୍କୃତିରେ ଅଷ୍ଟମୀର ବହୁ ମାହାତ୍ମ୍ୟ ରହିଛି । ବର୍ଷ ଭିତରେ ପଡୁଥିବା ଅଷ୍ଟମୀ ତିଥିମାନଙ୍କ ମଧ୍ୟରେ ପ୍ରଥମାଷ୍ଟମୀ, ପର୍ଶୁରାମାଷ୍ଟମୀ, ଜନ୍ମାଷ୍ଟମୀ, ରାଧାଷ୍ଟମୀ, ମୂଳାଷ୍ଟମୀ, ମହାଷ୍ଟମୀ, ଗୋଷ୍ଠାଷ୍ଟମୀ, ଭୀଷ୍ମଷ୍ଟମୀ ଓ ଅଶୋକାଷ୍ଟମୀ ପ୍ରମୁଖ ଅଷ୍ଟମୀ ଭାବରେ ସ୍ୱୀକୃତ ହୋଇଛନ୍ତି । ମାର୍ଗଶିର ମାସର ପ୍ରଥମ ଦିନକୁ କୃଷ୍ଣ ପ୍ରତିପଦା ବୋଲି କୁହାଯାଏ । ଏହାକୁ ଛାଡ଼ଖାଇ ମଧ୍ୟ କୁହାଯାଏ । ମାର୍ଗଶିର ମାସର ପଞ୍ଚମୀରେ ଶ୍ରୀକ୍ଷେତ୍ର ପରିକ୍ରମା ପୂର୍ବକ ଶ୍ରୀଜୀଉଙ୍କର ଦର୍ଶନ କଲେ ଅନେକ ପୁଣ୍ୟ ହୋଇଥାଏ ବୋଲି ଶାସ୍ତ୍ରରେ ଉଲ୍ଲେଖ ଅଛି ।

ବାମଦେବ ସଂହିତାରେ ଉଲ୍ଲେଖ ଅଛି–

''ଯସ୍ତୁକୁର୍ଯ୍ୟାଚ୍ଚ ଭ୍ରମଣଂ କ୍ଷେତ୍ରସ୍ୟ ଚଣ୍ଡିକେ ନରଃ ।
ସୋଽଶ୍ୱମେଧଫଳଂପ୍ରାପ୍ୟ ଗଚ୍ଛେଦନ୍ତେହରେଃପଦମ୍ ।।''

ଏହି ମାସର ଅଷ୍ଟମୀର ପ୍ରାଧାନ୍ୟ ଅନେକ । ଏହି ଅଷ୍ଟମୀକୁ କୃଷ୍ଣ ଅଷ୍ଟମୀ ବା ପ୍ରଥମା ଅଷ୍ଟମୀ ବୋଲି କୁହାଯାଏ । ଏହିଦିନ ଶ୍ରୀମନ୍ଦିରରେ ଉକ୍ତ ପର୍ବକୁ



ମହାଡ଼ମ୍ବରରେ ପାଳନ କରାଯାଏ । ଏହାର ତିଥି ନିର୍ଣ୍ଣୟ କରିବାକୁ ଯାଇ ନବମୀ ବିଦ୍ଧା ଅଷ୍ଟମୀ (ଉଦୟା)ତିଥିକୁ ଗ୍ରହଣ କରିବାକୁ କୁହାଯାଇଛି । କାରଣ ଉଦୟବାପିନୀ ଅଷ୍ଟମୀ ତିଥିରେ ଏହି ପର୍ବ ପାଳନ କରିବା ନିମନ୍ତେ ଓ ଦେବପୂଜାଦିରେ ଏହା ପ୍ରଶସ୍ତ ବୋଲି ଦୃଢ ଭାବରେ ଉଲ୍ଲେଖ ଥିବାରୁ ଶ୍ରୀମନ୍ଦିରରେ ଶ୍ରୀଜୀଉମାନଙ୍କର ପ୍ରଥମାଷ୍ଟମୀ ପର୍ବଯାତ୍ରା ଏହି ଉଦୟ ତିଥିରେ ହିଁ ପାଳିତ ହୋଇଥାଏ ।

ନୀଳାଦ୍ରି ମହୋଦୟରେ ଏହି ପର୍ବର ବିଧିବିଧାନ ଉଲ୍ଲେଖ ହୋଇଅଛି–

ତତୋଦ୍ଧଷ୍ଟମୀଦିନେ ପ୍ରାତଃ ପୂଜାନନ୍ତରଣେ ନୃପ ।
ମହାସ୍ନାନବିଧିଂ କୁର୍ଯ୍ୟାତ୍ ବିଷ୍ଣୋସ୍ତସ୍ୟ କୃପାନିଧେଃ ।।
ସର୍ବାଙ୍ଗେ ଚନ୍ଦନଂ ଦତ୍ତ୍ୱା ନବ୍ୟବସ୍ତ୍ରାର୍ପଣଂ ଭବେତ୍ ।
ପୁଷ୍ପାଳଙ୍କାର ନିଚୟୈର୍ଭୂଷୟେତ୍ କମଳେକ୍ଷଣମ୍ ।।

ଏହିଦିନ ଭୋଗମଣ୍ଡପ ଉପରେ ତିନି ବାଡ଼ରେ ମୈଲମ ସରି ମହାସ୍ନାନ ବଢିବା ଉତ୍ତାରୁ ବିଗ୍ରହମାନଙ୍କୁ ନୂଆଲୁଗା ଲାଗି ହୁଅନ୍ତି । ଚନ୍ଦନ ବିଜେ ହୋଇ ଆସି ଚନ୍ଦନଲାଗି ବଢିଲେ ବେଶ ହୁଏ । ଏହା ପରେ ଡୋର ଲାଗି ଓ କର୍ପୂର ଲାଗି ହୁଅନ୍ତି । ପୂଜା ଠା' ବଢିଲେ ନିର୍ଦ୍ଦିଷ୍ଟ ସେବକଙ୍କ ଦ୍ୱାରା ତିନିବାଡ଼ରେ ବରୁଣ ପୂଜା ହୁଏ । ମଧ୍ୟାହ୍ନ ଧୂପ ଉଠିଲେ ତିନି ବାଡ଼ରେ ମଙ୍ଗଳାର୍ପଣ ବଢି ଫୁଲପରିଆ, ଖଦି ଓ ଛେଦା ପ୍ରସାଦ ଲାଗି ସାରି ବନ୍ଦାପନା ହୋଇଥାଏ । ଏହା ପରେ ଦୈନନ୍ଦିନ ବିଧିଗୁଡ଼ିକ ପାଳିତ ହୋଇଥାଏ । ପ୍ରଥମାଷ୍ଟମୀଦିନ ପ୍ରାତଃକାଳୀନ ପୂଜା ସମ୍ପନ୍ନ ପରେ ମହାସ୍ନାନପରେ ନୂତନ ବସ୍ତ୍ରାଦି ଲାଗିହୋଇ ପିଷ୍ଟକ ବ୍ୟଞ୍ଜନ ଆଦି ନୈବେଦ୍ୟ ହୋଇଥାଏ । ଏହି ଉତ୍ସବ ଦର୍ଶନରେ ସମସ୍ତ ପାପତାପ ଖଣ୍ଡିତ ହୋଇ ବୈକୁଣ୍ଠ ପ୍ରାପ୍ତି ସୁଗମ ହୋଇଥାଏ ବୋଲି ବାମଦେବ ସଂହିତାରେ ଉଲ୍ଲେଖ ଅଛି ।

''ଏତଦୁତ୍ସବମାନନ୍ଦାତ୍ ଯଃ କୁର୍ଯ୍ୟାନ୍ନୃପସତ୍ତମ ।
ପଶ୍ୟେଦ୍ ବା ପରାୟା ଭକ୍ତ୍ୟା ମୁକ୍ତଃସ୍ୟାପ୍ରାପବୃନ୍ଦତଃ ।।
ଅନ୍ତେ ବିଷ୍ଣୁପୁରଂ ଗଚ୍ଛେସର୍ବଶର୍ମପ୍ରଦଂ ପରମ୍ ।''

ଲିଙ୍ଗପୁରାଣ ଅନୁସାରେ ମାର୍ଗଶିର ଅଷ୍ଟମୀରେ ଶ୍ରଦ୍ଧା ଓ ଭକ୍ତିର ସହିତ ଶୁଚିମନ୍ତ ହୋଇ ବ୍ରତୀମାନେ ନାନା ଉପଚାର ସଂଗ୍ରହ କରି ଗନ୍ଧ, ପୁଷ୍ପ, ଧୂପ, ଦୀପ ଦେଇ ଶିବଲିଙ୍ଗ ପୂଜନ କଲେ ଅନେକ ପୁଣ୍ୟ ମିଳିଥାଏ ବୋଲି ଉଲ୍ଲେଖ ଅଛି । ଯେଉଁ ବ୍ରତୀ ଗଣ୍ଡୁଷ ପ୍ରମାଣରେ ଗୋମୂତ୍ର ପାନ କରି ସେହିଦିନ ଉପବାସ କରେ,ତାଙ୍କ ଦେହରେ ଥିବା ସମସ୍ତ ପାପ କଟିଯାଇଥାଏ ବୋଲି ଶାସ୍ତ୍ରରେ ଉଲ୍ଲେଖ ଅଛି ।

ଲୋକାଚାର ଅନୁସାରେ ଏହି ଅଷ୍ଟମୀକୁ ପଢୁଆଁ ଅଷ୍ଟମୀ ଭାବରେ ଗ୍ରହଣ କରାଯାଏ କାରଣ ବିଭିନ୍ନ ଅଷ୍ଟମୀ କେତେକ ଦେବତାଙ୍କ ଉଦ୍ଦେଶ୍ୟରେ ପରିପାଳିତ ହେଉଥିବା ବେଳେ ପ୍ରଥମାଷ୍ଟମୀ ମୁଖ୍ୟତଃ ପାରିବାରିକ ଅଷ୍ଟମୀ ଭାବରେ ସ୍ୱୀକୃତି ଲାଭ କରିଛି । ଏଥିରେ ଏକ ଆଦର୍ଶଗତ ପରମ୍ପରା ବିଜଡ଼ିତ । ତାହା ହେଉଛି ଘରର ବଡ଼ପୁଅକୁ ପ୍ରାଧାନ୍ୟ ଦେବା । ସେ ଘରର ଭାବୀ ମୁରବୀ, ଦୁଃଖ–ସୁଖ ଓ ଗୃହର ସାମଗ୍ରିକ ପ୍ରତିଷ୍ଠା ତାଙ୍କ ମୁଣ୍ଡରେ । ଘରର ସମସ୍ତ ବୋଝ ବୋହି ସେ ଆଗକୁ ଚାଲିବା ସହ ସମସ୍ତ କ୍ରିୟା–କର୍ମର ଦାୟିତ୍ୱ ତୁଲାଇବ । ପିତାଙ୍କ ଅନ୍ତେ ସେ ମୁରବୀ ସାଜିବ, ସେ ଶୋଇଗଲେ ଘରର ଦରିଦ୍ରତାର ମୂଳ କାରଣ ହେବାବେଳେ ଜାଗି ଉଠିଲେ ଐଶ୍ୱର୍ଯ୍ୟପ୍ରଦ ହେବ । ମନୁ ମଧ୍ୟ ବଡ଼ପୁଅର କର୍ତ୍ତୃତ୍ୱ ସମ୍ପର୍କରେ କହିଛନ୍ତି,

''ପିତବେ ପାଳୟେତ୍ ପୁତ୍ରା ଜେଷ୍ଠୋ ଭ୍ରାତୃନ୍ୟବୀୟସ,
ପୁତ୍ରବତଚାପି କର୍ତ୍ତେର ଜ୍ୟେଷ୍ଠେ ଭ୍ରାତରି ଧର୍ମତଃ ।
(୯/୧୦୮)

ବଡ଼ଭାଇ ସାନଭାଇକୁ ପୁତ୍ରପରି ପାଳନ କରିବାରୁ ସାନଭାଇ ବଡ଼ଭାଇକୁ ନିଜର ପିତାବୋଲି ଧର୍ମଦୃଷ୍ଟିରୁ ମାନିଥାଏ । ମହର୍ଷି ବାଲ୍ମୀକୀ ମଧ୍ୟ ଜ୍ୟେଷ୍ଠଙ୍କୁ ଶ୍ରେଷ୍ଠସ୍ଥାନ ମିଳିବା ସମ୍ପର୍କରେ ମତ ଦେଇଛନ୍ତି ।(ଅଯୋଧ୍ୟା–୩/୨)ଚିରକାଳ ଲାଗି ଜ୍ୟେଷ୍ଠପୁତ୍ର ମର୍ଯ୍ୟାଦାବନ୍ତ ଏବଂ ଏହାର ନିଦର୍ଶନ ଲାଗି ପ୍ରଥମାଷ୍ଟମୀ ବା ପଢୁଆଁଷ୍ଟମୀର ସୃଷ୍ଟି । ଏହା ମାର୍ଗଶିର ମାସରେ ଅନୁଷ୍ଠିତ ହେଉଥିବାରୁ ନୂତନ ଶସ୍ୟ ଧାନଗଦାକୁ ଦେଖି କୃଷକ ଆନନ୍ଦରେ ବିମୋହିତ ହୋଇ ମାଣବସାଇ ଲକ୍ଷ୍ମୀଦେବୀଙ୍କୁ ବନ୍ଦାପନା କରେ । ନୂତନ ବର୍ଷ ପ୍ରଥମ ମାସ, ପ୍ରଥମ ସନ୍ତାନଙ୍କୁ ଅଭିବାଦନ ଜଣାଇବାକୁ ଗୃହସ୍ଥ ପାଳନ କରେ ଅଷ୍ଟମୀ ପର୍ବ । ଘରଦ୍ୱାର ଲିପାପୋଛା କରି ଜ୍ୟେଷ୍ଠ ପୁତ୍ର କିମ୍ବା ଜ୍ୟେଷ୍ଠକନ୍ୟାକୁ ସ୍ନାନ କରାଇ, ସାଜସଜ୍ଜା କରାଯାଏ ଓ ଷଷ୍ଠୀଦେବୀଙ୍କ ନିକଟରେ କଳସ ବସାଯାଇ ବନ୍ଦାପନା ଲାଗିହୋଇ ହଳଦୀପତ୍ରରେ ପ୍ରସ୍ତୁତ ଏଣ୍ଡୁରିପିଠା ଭୋଗଲାଗି ପରେ ଜ୍ୟେଷ୍ଠ ସନ୍ତାନଙ୍କ ମାମୁଘରୁ ଆସିଥିବା ନୂଆ ପୋଷାକ ପରିଧାନ ପୂର୍ବକ

ବନ୍ଦାପନା କରାଯାଏ । ଏଥିରେ ମୁଖ୍ୟ କାମଟି ହେଉଛି ମାମୁ ଘର, ସେହିଁ ପଢୁଆଁ କରିଥାନ୍ତି ଭଣଜା–ଭାଣିଜୀଙ୍କୁ । ବିନିମୟରେ ଭଣଜା–ଭାଣିଜୀଠାରୁ ମୃତ୍ୟୁଅନ୍ତେ ଶ୍ରାଦ୍ଧ ପାଇଥାନ୍ତି । ଛେନା, ଗୁଡ଼, ନଡ଼ିଆପୁର, ବିରି ଓ ଉଆପଖିଆ ଚାଉଳରେ ସ୍ୱତନ୍ତ୍ର ଭାବରେ ହଳଦୀ ପତ୍ର ବ୍ୟବହାର କରାଯାଇ ପିଠା ପ୍ରସ୍ତୁତ କରାଯାଏ । ଗୋଟିଏ ହାଣ୍ଡିରେ କନା ବାନ୍ଧି ତାକୁ ଚୁଲିରେ ବସା ଯାଏ । ସାଧାରଣତଃ ମାମୁମାନେ ବଡ଼ ଭଣଜା ଭାଣିଜୀମାନଙ୍କୁ ପଢୁଆଁ କରିବାକୁ ଆସୁଥିବାରୁ ତାଙ୍କୁ ଶ୍ରଦ୍ଧାରେ ଅଷ୍ଟମୀ ବନ୍ଧୁ ବୋଲି କୁହାଯାଇଥାଏ ।

ପ୍ରଥମାଷ୍ଟମୀର ଅନ୍ତର୍ନିହିତ ତାତ୍ପର୍ଯ୍ୟ ହେଉଛି ପରିବାରର ଯାବତୀୟ ଦାୟିତ୍ୱ ଓ ପ୍ରତିପୋଷଣ ଜ୍ୟେଷ୍ଠପୁତ୍ର ଉପରେ ପଡ଼ିଥାଏ । ତେଣୁ ଏହି ଦିନରେ ଜ୍ୟେଷ୍ଠ ପୁତ୍ରକୁ ପୂଜା ବନ୍ଦାପନା କରିବାର ବିଧି ପ୍ରଚଳିତ । ପ୍ରଥମାଷ୍ଟମୀର ଆଉ ଏକ ନାମ ହେଉଛି ସୌଭାଗିନୀ ଅଷ୍ଟମୀ । ଏହାକୁ କେହି କେହି କାଳଭୈରବାଷ୍ଟମୀ ବୋଲି ମଧ୍ୟ କହିଥାନ୍ତି । କାରଣ ଏହିଦିନ ମଧ୍ୟାହ୍ନରେ କାଳଭୈରବଙ୍କର ଆବିର୍ଭାବ ଘଟିଥିଲା ବୋଲି ଜନଶ୍ରୁତି ଅଛି । କାଳଭୈରବାଷ୍ଟମୀକୁ ପାପନାଶିନୀ ଅଷ୍ଟମୀ ବୋଲି ମଧ୍ୟ କୁହାଯାଏ । ଏହି ଅଷ୍ଟମୀରେ ଲିଙ୍ଗରାଜ ମହାପ୍ରଭୁ ତାଙ୍କ ମାମୁଘର କପାଳି ମଠକୁ ପଢୁଆଁ ହେବା ପାଇଁ ଯାଇଥାନ୍ତି ।

ପରିବାରର ପ୍ରଥମ ସନ୍ତାନକୁ ଶ୍ରଦ୍ଧା ଓ ସମ୍ମାନ କରିବା କ୍ଷେତ୍ରରେ ସେମାନଙ୍କ ପ୍ରତି ପରିବାରର ଗୁରୁଦାୟିତ୍ୱ ସଂପର୍କରେ ସୂଚିତ କରିବା ମଧ୍ୟ ହେଉଛି ଏହାର ଭାବାର୍ଥ । ପ୍ରଥମାଷ୍ଟମୀର ସକାଳର ପ୍ରଥମ ସୂର୍ଯ୍ୟର ପୁଲକରେ ଜ୍ୟେଷ୍ଠ ସନ୍ତାନକୁ ସ୍ନାନ ଓ ଦେବାଳୟରେ ଠାକୁରଙ୍କ କୃପାପ୍ରାପ୍ତି ସହ ସମସ୍ତଙ୍କ ଶୁଭାଶୀର୍ବାଦ ନେବା ଚେତନା ହେଉଛି ଓଡ଼ିଆ ପ୍ରଥମାଷ୍ଟମୀର ମୂଳଭିତ୍ତି ।

ସେହିଭଳି ଆମ ସଂସ୍କୃତିରେ ସଂକ୍ରାନ୍ତିର ମହତ୍ତ୍ୱ ବହୁତ ବେଶି । ସଂକ୍ରାନ୍ତିର ସନ୍ଧି କଲେ ସମ୍ + କ୍ରମ + କ୍ତି(ତି) ହୁଏ । ଏହାର ଅର୍ଥ ସଂକ୍ରମଣ ବା ଆଗେଇ ଚାଲିବା । ଜ୍ୟୋତିଷାର୍ଥରେ ଏକ ରାଶିରୁ ଅନ୍ୟ ରାଶିକୁ ସୂର୍ଯ୍ୟଙ୍କର ଗମନ । ଏହାକୁ ରବି ସଂକ୍ରମଣ କୁହାଯାଏ । ଓଡିଶାରେ ସଂକ୍ରାନ୍ତିକୁ ପରବର୍ତ୍ତୀ ସୌରମାସର ପ୍ରଥମ ଦିନ ବୋଲି ଗଣନା କରାଯାଏ । ସଂକ୍ରାନ୍ତିର ପୂର୍ବଦିନକୁ ମାସନ୍ତ ବୋଲି କୁହାଯାଏ । ସଂକ୍ରାନ୍ତିର ନାମକରଣ ପରବର୍ତ୍ତୀ ମାସର ନାମ ଅନୁସାରେ କରାଯାଏ ଯଥା–ଧନୁସଂକ୍ରାନ୍ତି, ମକର ସଂକ୍ରାନ୍ତି, ବିଷୁବ ସଂକ୍ରାନ୍ତି ଇତ୍ୟାଦି । ମକର ବା ମାଘ ସଂକ୍ରାନ୍ତିକୁ ଉତ୍ତରାୟଣ ସଂକ୍ରାନ୍ତି ଓ କର୍କଟ ବା ଶ୍ରାବଣ ସଂକ୍ରାନ୍ତିକୁ ଦକ୍ଷିଣାୟନ ସଂକ୍ରାନ୍ତି କୁହାଯାଏ । ଗୋଟିଏ ବର୍ଷରେ ସୂର୍ଯ୍ୟଙ୍କର ଦୁଇଟି ଅୟନ ହୁଏ । ଉତ୍ତରାୟଣ ଓ ଦକ୍ଷିଣାୟନ । ସେହିପରି ମେଷ ବା ବୈଶାଖ ସଂକ୍ରାନ୍ତିକୁ ମହାବିଷୁବ ସଂକ୍ରାନ୍ତି କୁହାଯାଉଥିବା ବେଳେ ତୁଳା ସଂକ୍ରାନ୍ତିକୁ ଜଳବିଷୁବ ସଂକ୍ରାନ୍ତି ବା ଗର୍ଭଣା ସଂକ୍ରାନ୍ତି କୁହାଯାଏ । ରବି ସଂକ୍ରମଣ ସମୟ ଅତ୍ୟନ୍ତ ପୁଣ୍ୟକାଳ ହୋଇଥିବାରୁ ଏହି ସମୟରେ ସ୍ନାନ, ହୋମ ଓ ମନ୍ତ୍ର ଜପରେ ପୁଣ୍ୟ ସଂଚୟ ହୁଏ । ଏଣୁ ଉକ୍ତ ଦିବସରେ ସ୍ତ୍ରୀ, ତୈଳ ଓ ଆମିଷାଦି ବର୍ଜନୀୟ । ଏହିଦିନ ସାୟଂ ସନ୍ଧ୍ୟା ମଧ ନିଷିଦ୍ଧ । ବର୍ଷରେ ସମୁଦାୟ ବାରମାସରେ ବାରଗୋଟି ସଂକ୍ରାନ୍ତି ପଡିଥାଏ । ଏହି କ୍ରମରେ ଧନୁସଂକ୍ରାନ୍ତି ସୂର୍ଯ୍ୟଦେବଙ୍କ ଦକ୍ଷିଣାୟନରେ ଅବସ୍ଥିତ ସମୟରେ ରାଶିଚକ୍ରର ୧୨ଟି ସଂକ୍ରମଣ ମଧ୍ୟରୁ ଏହା ନବମ ସଂଖ୍ୟାର ରାଶିଚକ୍ର ଅଟେ । ପ୍ରତ୍ୟେକ ଇଂରାଜୀ ମାସର ୧୩ରୁ ୧୫ ତାରିଖ ମଧ୍ୟରେ ପ୍ରାୟତଃ ସୂର୍ଯ୍ୟ ଏକ ରାଶିରୁ ଅନ୍ୟ ରାଶିକୁ ସଂକ୍ରମଣ କରିଥାନ୍ତି । ଏଣୁ ଡିସେମ୍ବର ଓ ଜାନୁଆରୀ ମାସରେ ହେଉଥିବା ସୂର୍ଯ୍ୟଙ୍କର ସଂକ୍ରମଣକୁ ଧନୁ ସଂକ୍ରାନ୍ତି କୁହାଯାଏ । ଜ୍ୟୋତିଷ ଶାସ୍ତ୍ରାନୁସାରେ ଧନୁ ସଂକ୍ରାନ୍ତିକୁ ମହୋଦରୀ ଭାବେ ଅଭିହିତ କରାଯାଇଛି । ଏହାର ଅଧିପତି ଗ୍ରହ ହେଉଛନ୍ତି ବୃହସ୍ପତି । ବୃହସ୍ପତିଙ୍କ ଗ୍ରହ ସଂଖ୍ୟା ୫ । ଏହି ରାଶିର ଅଧିଷ୍ଠାତ୍ରୀ ଦେବୀ ଅଟନ୍ତି ତାରା । ଧନୁରାଶିର ସ୍ୱରୂପ ବ୍ୟକ୍ତ କରି ପାଞ୍ଜିକାରମାନେ ବର୍ଣ୍ଣନା କରନ୍ତି ଯେ, ଏ ମାସର ସଂକ୍ରାନ୍ତି ପୁରୁଷ, ପଶୁଜାତି, ପ୍ରୋଢା, ରକ୍ତବସ୍ତ୍ର ପରିହିତ, ଗୋରଚନା ପ୍ରଲେପିତ, ବେଲପତ୍ର ଭୂଷିତ, ସୀସାପାତ୍ରରେ କ୍ଷୀରପାନ କରି, ଧନୁର୍ବାଣ ହସ୍ତରେ ଧାରଣ କରି ହସ୍ତୀ ବାହନରେ ପଶ୍ଚିମ ଦିଗରୁ ଆସି, ପୂର୍ବଦିଗକୁ ଦୃଷ୍ଟି ଦେଇ ଦକ୍ଷିଣ ଦିଗକୁ ଗମନ କରିବେ ।

ଉକ୍ତଦିବସ ଏକ ପବିତ୍ର ଦିବସ । ଉକ୍ତ ଦିନ ନବଗ୍ରହଙ୍କର ଉପାସନା କରାଯାଏ । ଏହା ବ୍ୟତୀତ ମହାଲକ୍ଷ୍ମୀ ବାପଘରକୁ ଯାଇଥାନ୍ତି ବୋଲି ଶ୍ରୀମନ୍ଦିରରେ ପହିଲି ଭୋଗ ଆରମ୍ଭ ହୋଇ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥାଏ । ଏହିଦିନମାନଙ୍କରେ ସକାଳର ଗୋପାଳବଲ୍ଲଭ ସହିତ ପହିଲି ଭୋଗ କରାଯାଇଥାଏ । ଏଥି ନିମନ୍ତେ ଶ୍ରୀମନ୍ଦିରରେ ସ୍ୱତନ୍ତ୍ର ନୀତି ନିର୍ଘଣ୍ଟ ହୋଇଥାଏ । ରାତ୍ର ୨.୩୦ମିରେ ଦ୍ୱାରଫିଟା, ଭିତର ଶୋଧ, ମଙ୍ଗଳ ଆଳତି ଓ ଅବକାଶ କରାଯାଇଥାଏ । ଅଣସର ପିଣ୍ଡି ବା ବଲ୍ଲଭ ପିଣ୍ଡିଠାରେ ପାଣି ପଡି ପରିଷ୍କାର କରାଯାଇ ପରଖମାନଙ୍କରେ ବଲ୍ଲଭ ବଢା ହୁଏ । ଏହା ପରେ ପହିଲି ଭୋଗ ଛେକ ଆସିବା ପାଇଁ ରୋଷକୁ ଡକରାଯାଏ । ଏ ଭୋଗରେ ବିରି ଓ ଗହମରେ ଘୃତପାକ ହୋଇଥିବା ସ୍ୱତନ୍ତ୍ର ଧରଣର ପିଠାମାନ ମହାସୁଆରମାନେ ଛେକରେ ଆଣିଥାନ୍ତି । ପୂଜାପଣ୍ଡାମାନେ ପଞ୍ଚୋପଚାରରେ ପୂଜା କରିଥାନ୍ତି । ପହିଲି ଭୋଗରେ ୨୩ ପ୍ରକାର ଯଥା– ବଡ ଝିଲି, ବଡି, ନାଡି, ଚୁଡା ଭଜା, ଛତୁ, ବଡା, କାକରା, ଟାକିରି, ଗଇଣ୍ଠା, ମଣ୍ଡା, ଏଣ୍ଡୁରି, ଚୁଡାପୁଆ, ଅମାଲୁ, ଚଢେଇନେଦା ଗୁଳା, ଦରସୁଆ ବଡି, କାନ୍ତି, ନଡୁଗଜା, ନଳିମୁଗେଇ, ଆରିସା ଓ କଣ୍ଟେଇ ପ୍ରଭୃତି ଅନ୍ତର୍ଭୁକ୍ତ । ନୂଆ ଚାଉଳ ସହିତ ନୂଆ ଆଖୁରୁ ଉତ୍ପାଦିତ ଗୁଡରେ ନିର୍ମିତ ମୁଆଁ ଖୁବ୍ ସ୍ୱାଦିଷ୍ଟ ହୋଇଥାଏ ।

ଏହି ଭୋଗର ଉତ୍ପତ୍ତି ଓ କାରଣ ସମ୍ପର୍କରେ ଜନଶ୍ରୁତି ଏବଂ ଷୋଡଶ ଶତାବ୍ଦୀର କବି ମାଧବୀ ଦାସଙ୍କ ରଚନାରୁ ଜଣାଯାଏ ଯେ, ଏହି ମାସରେ ମାତା ଯଶୋଦା ଶ୍ରୀକୃଷ୍ଣଙ୍କୁ ରାତି ପାହିବା ପୂର୍ବରୁ ବିଭିନ୍ନ ଲଘୁଦ୍ରବ୍ୟ ଭୁଞ୍ଜାଇ ଦିଅନ୍ତି । ଏଣୁ ଏହି ଭୋଗ ହେଉଛି ବାତ୍ସଲ୍ୟ ସ୍ନେହ ତଥା ନୈସର୍ଗିକ ପ୍ରେମର ନିଦର୍ଶନ । ଏ ସମ୍ପର୍କୀୟ ପୌରାଣିକ ଆଖ୍ୟାନରୁ ଜଣାଯାଏ, ଏକଦା ଦ୍ୱାରିକାରେ ଶ୍ରୀକୃଷ୍ଣ ମାତା ଯଶୋଦାଙ୍କ ସ୍ମୃତିରେ ବ୍ୟାକୁଳିତ ହୋଇ ବାଳଗୋପାଳ ରୂପ ଧାରଣ କରିଥିବା ସମୟରେ ନାରଦ ପହଞ୍ଚିଯାଇ ତାହାର ରହସ୍ୟ ଜିଜ୍ଞାସା କରିଥିଲେ । ଶ୍ରୀକୃଷ୍ଣ ତାଙ୍କୁ ଏହାର ଉତ୍ତର ନିମନ୍ତେ ଗୋପପୁରକୁ ପ୍ରେରଣ କରିଥିଲେ । ସେଠାରେ ପହଞ୍ଚି ନାରଦ ଦେଖିଲେ ମାତା ଯଶୋଦା କୃଷ୍ଣ ଏବଂ ବଳରାମଙ୍କୁ କୋଳରେ ଧାରଣ ପୂର୍ବକ ନାନା ସୁମିଷ୍ଟ ଦ୍ରବ୍ୟ ଆନନ୍ଦରେ ସେବନ କରାଉଛନ୍ତି । ଏଣୁ ଏହାର ସ୍ମାରକୀ ସ୍ୱରୂପ ଶ୍ରୀମନ୍ଦିରରେ ପହିଲି ଭୋଗ ପ୍ରଚଳନ ଅଛି । ମାତା ଲକ୍ଷ୍ମୀ ଓଡିଆ ଘରର ବୋହୂର ପ୍ରତିନିଧିତ୍ୱ କରୁଥିବାରୁ ଏବଂ ଏହି ମାସରେ ବାପଘରକୁ ଯାଉଥିବାରୁ ଲୋକକଥାରେ ଓଡିଆ ବୋହୂ ପୌଷ ମାସରେ ବାପଘରକୁ ଯିବାର ପ୍ରଥା ମଧ୍ୟ ପ୍ରଚଳିତ ଅଛି ।

ଏହା ମଧ୍ୟ ଏକ କୃଷିଜାତୀୟ ପର୍ବ ଅଟେ । ଉକ୍ତ ଦିନ କୃଷକ ଧାନକୁ ବେଣ୍ଟିକରି ପୂଜା କରିବା ସହିତ, ଖିରୀ ଖେଚୁଡି ଭୋଗ ଲାଗିକରି ବେଣ୍ଟିକୁ ଘରେ ଝୁଲାଇଥାଏ । ଧାନମାପକ ସେର, ମାଣ, ଗୌଣୀ ଆଦିରେ ଚିତା ସିନ୍ଦୂର ଲାଗିକରି ସନ୍ଧ୍ୟା ସମୟରେ ଧାନଖଳାରେ ମେରି ପୋତେ ଧାନ ବେଙ୍ଗଳା ଲାଗି । ଖଳାକୁ ଗୋମୟରେ ଲିପି ବଟ, ଶପ୍ତପର୍ଣ୍ଣି, ଗମ୍ଭାରୀ, ଶିମିଳି, ଖାର ବିଶିଷ୍ଟ ଗଛର କାଠରେ ମେରି ପୋତାଯାଏ । ତାହା ମୁଣ୍ଡରେ ପତାକାରୂପେ ନିମ୍ବପତ୍ର ଓ ସୋରିଷ ରଖିବା ଉଚିତ । ବର୍ତ୍ତମାନ ପୁରପଲ୍ଲୀରେ କାନକୋଳି କଣ୍ଟା କିମ୍ବା ବରକୋଳି ଝଟା କଦଳୀପତ୍ର ସହିତ ବାନ୍ଧି ଲଗାଯାଉଛି । ମେରି ପୋତିସାରି କୃଷକ ଧାନଗଦାକୁ ମୁଣ୍ଡିଆମାରି ଧନୁସଂକ୍ରାନ୍ତି ପାଳନ କରିଥାଏ ।

ଗୌଡ଼ଗାଁ, କପ୍ତିପଦା, ମୟୂରଭଂଜ



# ଅଖ୍ୟାତ ପଲ୍ଲୀର ସଂଗ୍ରାମୀ ରବି ସିଂ ମାଝି

ନାରାୟଣ ପଣ୍ଡା

'ହଇନା ଏ ବୁଟି, କାଲିର ପିଲା ତୁଇ,ଏଡକ ବଡଲୋକ ହେଲୁସ ଆଛିକିନା । ସୁନାଧର ଗୌନ୍ତିୟାର କାତାରେ ମକେ ଗଡମ ନା ଦେବା କାଜେ ସବକେ ମତାଇଲୁ ଆଚ୍ଛରେ ପୁତା, ଆଜି ତର ପିଠି ଥାନେ କୋନ ପଡସି ଦେଖବି ବେ ।'

ହଠାତ୍ ପଛରେ ଛିଡା ହୋଇଥିବା କେତେଜଣ ପନକା ପିଲା ସୁନାଧର ପନକାର ଇଙ୍ଗିତରେ କିଶୋର ବୁଟିକୁ ମାଡିବସି ନିସ୍ଠୁକ ମାଡ ଦେଲେ । ପିଠି ଫାଟିଗଲା ବୁଟିର । ଚେତା ହରାଇ ବସିଲା ସେ । ନିଆଁ ଭଳି ଏ ଖବର ବ୍ୟାପିଗଲା । ଗଣ୍ଡ ପିଲାକୁ ମାରିଛି ପନକା ପିଲା । ଜାତି ଯାଇଛି ବୁଟିର । କ'ଣ ହେବ ଏବେ । ଶେଷକୁ ଖବର ଗଲା ଦେଶିଆ ବ୍ରାହ୍ମଣ ଜୟରାମ ବାସୁଦେବ ନିକଟକୁ । ଗୋବର ପାଣି ଓ ହଳଦି ପାଣି ଛିଞ୍ଚାଯାଇ ବିଶେଷ ଉପଚାର କରାଗଲା । ପ୍ରାୟଶ୍ଚିତ ଓ ଦୀର୍ଘ ପୂଜାର୍ଚ୍ଚନା ପରେ ଜାତି ଫେରିଲା ବୁଟିର । ସେଦିନ ମାରିବା ପାଇଁ ପ୍ରବର୍ତ୍ତାଇଥିବା ବ୍ୟକ୍ତି ଥିଲେ ଭାମିନୀର ଅତ୍ୟାଚାରୀ ଗଣ୍ଡା ସୁଖଚାନ୍ଦ ପନକା । ପରବର୍ତ୍ତୀ ସମୟରେ ବିଭିନ୍ନ କୁତ୍ସିତ ଉପାୟ ଅବଲମ୍ବନ କରି ଜନୈକ ଅହଙ୍କାରୀ ଓ ଦୁର୍ନୀତି ପରାୟଣ ପୋଲିସଙ୍କ ସହାୟତାରେ ସେ ହୋଇପାରିଥିଲେ ଗାଁ ଗୌନ୍ତିୟା । ସେଦିନ ମାଡରେ ବୁଟିର ଦେହ ହାତ ପିଠି ଫୁଲି ଯାଇଥିଲା, ଫାଟି ଯାଇଥିଲା ଓଠ, ଚିରିଯାଇଥିଲା ପିନ୍ଧା ବସନ ।

ବୁଟି ବୋଲି ଜୁହାଯାଇଥିବା କିଶୋର ଜଣକ ନବରଙ୍ଗପୁର ଉମରକୋଟ ଅଞ୍ଚଳର ଦୁର୍ଦ୍ଧର୍ଷ ସ୍ୱାଧୀନତା ସଂଗ୍ରାମୀ ଓ ସ୍ୱାଧୀନୋତ୍ତର କାଳରେ ରବି ସିଂ ମାଝିଙ୍କ ବ୍ୟତୀତ ଅନ୍ୟ କେହି ନୁହନ୍ତି । ଅତ୍ୟାଚାର, ଶୋଷଣ ଓ ଅନ୍ୟାୟର ଘନ ତମସାଚ୍ଛନ୍ନ ଅଞ୍ଚଳରୁ ଜନ୍ମ ନେଇ ସେ ସ୍ୱାଧୀନତା ସଂଗ୍ରାମର ମଶାଲ ଜାଳିଥିଲେ । ବନ୍ଦେ ମାତରମ, ଇନକିଲାବ ଓ ଜିନ୍ଦାବାଦ ଧ୍ୱନି ଦେଇ ଅଗ୍ନିବର୍ଷୀ ଦେଶପ୍ରେମର ମନ୍ତ୍ରରେ ଅଭିମନ୍ତ୍ରିତ କରିଥିଲେ ଅନୁନ୍ନତ ଓ ସରଳ ବନବାସୀଙ୍କୁ । ସେ ଥିଲେ ଏକ ଅଖ୍ୟାତ ପଲ୍ଲୀର ଆଦିବାସୀ ମଣିଷଟିଏ ରବି ସିଂ ମାଝି । ପିତା ପଟୁ ମାଝି ଓ ମାତା ଦୁଃଖୀଙ୍କ ଗର୍ଭରୁ ୨୧.୧୧.୧୯୨୩ ମସିହାରେ ଉମରକୋଟ ନିକଟବର୍ତ୍ତୀ ଘନ ଅରଣ୍ୟାନୀ ପରିବେଷ୍ଟିତ କ୍ଷୁଦ୍ର ଆଦିବାସୀ ଜନପଦ ବାଟିବେଡାରେ ତାଙ୍କର ଜନ୍ମ । ମାତ୍ର କମ୍ ବୟସରେ ୧୯୩୭ ମସିହାରେ ଗ୍ରାମର ଗୌନ୍ତିୟାରୁ କଂଗ୍ରେସ କର୍ମୀରେ ପରିଣତ ହେଇଥିବା ସୁକମନ ନାୟକଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଦେଶକୁ ବିଦେଶୀ ଶାସନ କବଳରୁ ମୁକ୍ତ କରିବାର ବଜ୍ର ଦୃଢ ସଂକଳ୍ପ ନେଇ କଂଗ୍ରେସରେ ମିଶନ୍ତି ସେ । ପୂର୍ବରୁ ଝରିଗାଁର ଘରୋଇ ଚାଟଶାଳୀ ଶିକ୍ଷକ – ସେ ଅଞ୍ଚଳରେ କଳାନାଗ ମାଷ୍ଟର ନାମରେ ପରିଚିତ – ନାରାୟଣ ମାଝିଙ୍କ ତତ୍ତ୍ୱାବଧାନରେ ଅକ୍ଷର ଶିଖି ସେ କମଳଲୋଚନ ଶ୍ରୀହରି ଆବୃତି କରିପାରୁଥିଲେ । ପରବର୍ତ୍ତୀ ସମୟରେ ନିକଟସ୍ଥ ଭାମିନୀ ଗ୍ରାମ ବିଦ୍ୟାଳୟରୁ ଶିକ୍ଷକ ଦୀନବନ୍ଧୁ ମାଝି ଓ ନବରଙ୍ଗପୁର ନିବାସୀ ଶିକ୍ଷକ ବିନାୟକ ମହାନ୍ତିଙ୍କ ନିକଟରେ ତୃତୀୟ

ଶ୍ରେଣୀ ପର୍ଯ୍ୟନ୍ତ ସେ ଅଧ୍ୟୟନ କରିଥିଲେ । ଏଇଠୁ ତାଙ୍କ ବସ୍ତାନିରେ ଡୋରି ବନ୍ଧାଗଲା । ରାଜା ଓ ବ୍ରିଟିଶ ସରକାରଙ୍କ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ କରି ଜାତି ଓ ଦେଶକୁ ମୁକ୍ତିର ଆସ୍ୱାଦନ କରାଇବା ପାଇଁ ଯାହାଙ୍କର ଜନ୍ମ, ଅଧିକ ଅଧ୍ୟୟନ କରି ମୂଲ୍ୟବାନ ସମୟକୁ ବରବାଦ କରିବା ହୁଏତ ଈଶ୍ୱରଙ୍କ ଇଚ୍ଛା ନଥିଲା । ଉମରକୋଟ ଅଞ୍ଚଳର ପ୍ରଥମ ଚାରିଜଣିଆ କଂଗ୍ରେସ ସଭ୍ୟ, ମହାତ୍ମା ଗାନ୍ଧୀଙ୍କ ଆଦର୍ଶର ନିଷ୍ଠାପର ଅନୁଗାମୀ ତଥା ଭାମିନୀ ଗ୍ରାମର ଗୌନ୍ତିୟା ସୁନାଧାର ନାୟକଙ୍କ ସମ୍ପର୍ଶରେ ଆସି ପାଠପଢା ଛାଡିଲେ ସେ । ସେହି ସମୟରେ ସମାଜରେ କେତେକ ନିଷ୍ଠୁର ପ୍ରଥା ଯଥା : ବେଠିଆ , ଜମିଛଡା , ଗାଁଜୟିତା, କାଠକାଉଡି, ଘରଛପର, ସପ୍ଲାଇ, ଗଡମ, ରୋଡକାମ, ଡୋଲିବୁହା, ଲଙ୍ଗଳପାନୁ, ମୁଣାଧରା ଓ ହାଟପାହାରି ଆଦି ପ୍ରଚଳିତ ନିନ୍ଦିତ ବ୍ୟବସ୍ଥା ଆଦିବାସୀ ଜନଜୀବନକୁ ଭାରାକ୍ରାନ୍ତ, ବେଦନାକ୍ତ ଓ ଅନ୍ତଃସାରଶୂନ୍ୟ କରି ଗଢିତୋଳିଥିଲା ।

କଂଗ୍ରେସ କ'ଣ ଓ କାହିଁକି ଏବଂ ଏହାର ଆଭିମୁଖ୍ୟ ସମ୍ପର୍କରେ ତୃଣମୂଳ ସ୍ତରର କର୍ମୀମାନଙ୍କୁ ଜଣାଇବା ପାଇଁ ୧୯୩୮–୩୯ରେ ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ଦେଶର ବିଭିନ୍ନ ସ୍ଥାନରେ କର୍ମୀ ତାଲିମ କେନ୍ଦ୍ରମାନ ପ୍ରତିଷ୍ଠିତ ହେଲା । ଏହି କ୍ରମରେ କୋରାପୁଟର ମହେନ୍ଦ୍ରୀ, ରାୟଗଡାର ଗୁଣପୁର, ଜୟପୁରର ନୂଆପୁଟ ଓ ନବରଙ୍ଗପୁରର ତାରାଗାଁଠାରେ ଏକମାସିଆ ତାଲିମ କେନ୍ଦ୍ର ଖୋଲାଗଲା । ଉମରକୋଟର ରବି ସିଂ ମାଝି, ଅଞ୍ଚଳାର ବାଳଚନ୍ଦ ନାୟକ, ସରାଗୁଡାର ବଳରାମ ନାୟକ, କୁସୁମବନ୍ଧର ସୋନୁ ମାଝି ପ୍ରମୁଖ ନବରଙ୍ଗପୁରର ଲକ୍ଷ୍ମୀଚନ୍ଦ୍ର ଦାସ ଓ ସଦାଶିବ ତ୍ରିପାଠୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସେଠାରେ ସର୍ବଧର୍ମ ପ୍ରାର୍ଥନା, ଚରଖାରେ ସୂତା କାଟିବା, ଲୁଗା ବୁଣିବା, ସମଦର୍ଶୀ ଭାବ ଓ ହରିଜନ ସେବାରେ ବ୍ରତୀ ହେବା ପାଇଁ ଶିକ୍ଷାଲାଭ କଲେ । ତାଲିମ କେନ୍ଦ୍ରର ମୁଖ୍ୟ ଦାୟିତ୍ୱରେ ଥିଲେ ସମ୍ବଲପୁର ଅଞ୍ଚଳର କଂଗ୍ରେସ କର୍ମୀ ରାମଚନ୍ଦ୍ର ପୁରୀ । ତାଲିମରୁ ବାହାରି ରବି ସିଂ ଉମରକୋଟ ଅଞ୍ଚଳର ଆଦିବାସୀ ଗ୍ରାମମାନଙ୍କରେ କଂଗ୍ରେସ ବାର୍ତ୍ତା ପ୍ରଚାର କଲେ । ପରାଧୀନତାର ଘୋର ଅନ୍ଧକାର ମଧ୍ୟରେ ଆଦିବାସୀମାନଙ୍କ ମନରେ ଏକ ନୂଆ ସ୍ୱପ୍ନ ଅଙ୍କୁରିତ କରିବା ପାଇଁ ପ୍ରତିବଦ୍ଧ ହେଲେ ରବି ସିଂ ମାଝି । ତାଙ୍କର ପ୍ରତ୍ୟକ୍ଷ ନେତୃତ୍ୱରେ ଉମରକୋଟର ଗାଁ ଗଣ୍ଡାର ଲୋକେ କପାଚାଷ ଓ ସୂତାକଟା, ରାମଧୁନ ଗାନ ଓ ମହାତ୍ମା ଗାନ୍ଧୀଙ୍କର ଜୟଗାନ କରିବାକୁ ଲାଗିଲେ । ବନବାସୀଙ୍କ ହୃଦୟରେ ନବ ଉନ୍ମାଦନା ସୃଷ୍ଟି ହେଲା । ଉମରକୋଟ ପୋଲିସ ଥାନାର ତତ୍କାଳୀନ ପୋଲିସ ଏସ୍.ଆଇ. ତ୍ରିଲୋଚନ ମିଶ୍ରଙ୍କ ଆଖିରେ ଏହା ଗଲା ନାହିଁ । ଏମାନଙ୍କ ଗାନ୍ଧୀପ୍ରେମ ଓ ସ୍ୱାଧୀନତା ଆଂଦୋଳନର ଯୋଗଦାନକୁ ନାପସନ୍ଦ କରୁଥିଲେ ସେ । ଓଡିଶାରେ ଜନ୍ମ ହୋଇଥିଲେ ମଧ୍ୟ ଦେଶପ୍ରେମ ତାଙ୍କୁ ସ୍ପର୍ଶ କରି ନଥିଲା । ସରଳ ଓ ନିରକ୍ଷର ବନବାସୀମାନଙ୍କୁ ଆତଙ୍କିତ କରି ରଖିଥିଲେ ସେ । ଉମରକୋଟ ହାଟକୁ ଆସୁଥିବା ଲୁଡା ରଖି ଆସୁଥିବା ଗଣ୍ଡ ମଣିଷଙ୍କ ଉପରେ ତାଙ୍କର ଅତ୍ୟାଚାର ବଢିବାକୁ ଲାଗିଲା । ଯିଏ କଂଗ୍ରେସକୁ ସମର୍ଥନ କରୁଥିବା ଜଣାଗଲା ସେମାନଙ୍କୁ ମାଡମାରି କ୍ଷତାକ୍ତ ଦେଉଥିଲେ ତାଙ୍କର ଜବାନମାନେ । ମିଛ ମାମଲାରେ ଛନ୍ଦି ସେମାନଙ୍କୁ ହଇରାଣ କରୁଥିଲେ ତ୍ରିଲୋଚନ ମିଶ୍ର ।

୧୯୪୧ରେ ଗାନ୍ଧିଜୀଙ୍କ ଅନୁମୋଦନରେ ସତ୍ୟାଗ୍ରହ କରିବା ପାଇଁ ମନୋନୀତ ହେଲେ ରବି ସିଂ । ୧୯୪୦ ଡିସେମ୍ବର ପ୍ରଥମ ସପ୍ତାହରେ ନବରଙ୍ଗପୁର କଂଗ୍ରେସ କମିଟିର ନିର୍ଦ୍ଦେଶ ଅନୁଯାୟୀ କୋରାପୁଟ କଲେକ୍ଟର ଏସ୍.ପି ଓ ଉମରକୋଟ ଥାନାକୁ ଜଣାଇ ସତ୍ୟାଗ୍ରହ କରିବା ପାଇଁ ବାହାରି ପଡିଲେ । ହୀରାପୁରଠାରେ ଏକ ଜନ ସମାବେଶରେ ଉଦ୍‌ବୋଧନ ଦେଇ ରବି ସିଂ କହିଲେ – ଭାଇମାନେ ଗାନ୍ଧୀ ମହାପ୍ରଭୁର କଥା – ଆମର ଦେଶ କେ ଗୋରା ସରକାର ନସେଇ ଦେଲା ବେ । ରଜାର ଲୁକବାକ ଆମର ବେଢା, ଧାନ, ମୁଗ ବିରି, କପଡା ଜୁରଲାଇନି । ଏବେ ଯୁଦ୍ଧ ଲାଗଲା ଆଚେ । ଆମକେ ଯୁଦ୍ଧର ଚାନ୍ଦା ପଡଲା ଆଚେ ।

ଗାନ୍ଧୀ ମହାପ୍ରଭୁ କହିଲା ଆଚେ । ଚାନ୍ଦା ଦେବାକେ ହେବା ନାହିଁ । ରଜା କେ ସିପ୍ଲୁ ନାଇଁ । ଗଡମ ନାଇଁ । ଇଟା ସତ୍ୟର ଯୁଦ୍ଧ ଆଏ । ସତ ଏକା ସତ ଥାନେ ଜିନସି । ମରବା ସିନା ଡରବା କଥା ନାଇଁ । ଅସହଯୋଗ ହେଇସି । ଦମ୍ ଧରିଲେ ସ୍ୱରାଜ ଆଇସି । ଜୟ ଭରତ ମାତା ।

ଏହି ସମୟରେ ସେ ପ୍ରଥମ ଥର ପାଇଁ ଗିରଫ ହେଲେ । ଥାନାବାବୁ ତ୍ରିଲୋଚନ ମିଶ୍ର ପକେଟରୁ ଗିରଫ ପରବାନା କାଢ଼ି କହିଲେ ମହାରାଣୀଙ୍କ ରାଜ୍ୟରେ ପ୍ରଜା ହୋଇ ରାଜଦ୍ରୋହ କରିଥିବାରୁ ତମକୁ ଗିରଫ କରାଗଲା । ପ୍ରଥମ ଥର ପାଇଁ ହାତକଡ଼ି ପଡ଼ିଲା ରବି ସିଂଙ୍କ ହାତରେ । ହୀରାପୁରଠାରୁ ଉମରକୋଟ ପର୍ଯ୍ୟନ୍ତ ଛଅ କିଲୋମିଟର ତାଙ୍କୁ ଚଲାଇ ଚଲାଇ ଅଣାଗଲା ।

ଉମରକୋଟ ହାଜତ ଘରେ ହାତବନ୍ଧା ରବି ସିଂଙ୍କୁ ଥାନାବାବୁ ତ୍ରିଲୋଚନ ମିଶ୍ର କହିଲେ – କଂଗ୍ରେସରେ ମିଶିଛୁ । ଏବେ ଜେଲ୍‌ରେ ହାତ ଗୋଡ଼ ସଢ଼ିଯିବ । ପୋଲିସକୁ ଗାଳି କରିଛୁ ! ୧୦ ତାରିଖ ଦିନ ତାଙ୍କୁ ନବରଙ୍ଗପୁର ଜେଲକୁ ନିଆଗଲା । ନବରଙ୍ଗପୁର ଜେଲ୍ ଥିଲା ବର୍ବରତା ଓ ନିଷ୍ଠୁରତାର ପ୍ରତୀକ । ଧାଡ଼ିରେ ଠିଆ ହୋଇ ମାଣ୍ଡିଆ ଚୂନାର ରୁଟି ଓ ମୂଳା ଶାଗର ତରକାରୀକୁ କଲେଇକରା ଥାଳିରେ ଖାଇବାକୁ ଠିଆହେଲେ ରବି ସିଂ ମାଝି ।

୧୧ ତାରିଖ ଦିନ ତାଙ୍କୁ ମାଜିଷ୍ଟ୍ରେଟଙ୍କ ଅଦାଲତରେ ପେଶ୍ କଲେ । ପୁଲିସ ରିପୋର୍ଟ, ସାକ୍ଷୀମାନଙ୍କ ବୟାନ, ନିର୍ଭୀକ ସ୍ୱୀକାରୋକ୍ତି ଓ ନିଜ ଇଚ୍ଛାରେ ସତ୍ୟାଗ୍ରହ ଘୋଷଣା କରିଥିବାରୁ ତାଙ୍କୁ ଦେଶଦ୍ରୋହୀ ରୂପେ ଦଣ୍ଡିତ କରିବା ପାଇଁ ଯଥେଷ୍ଟ ଥିଲା । ମାଜିଷ୍ଟ୍ରେଟ୍‌ଙ୍କ ରାୟ ଥିଲା ଉମରକୋଟ ଥାନାର କେସ୍ ସଂଖ୍ୟା ୫/୪୧ ଅନୁସାରେ ଅପରାଧୀ ସଂଖ୍ୟା ୯୧୩, ରବି ସିଂ ମାଝି, ପିତା – ପଟୁ ମାଝି, ଗ୍ରାମ – ବାଟିବେଡା, ଥାନା – ଉମରକୋଟ, ଜିଲ୍ଲା– କୋରାପୁଟଙ୍କୁ ସରକାରୀ ବିରୋଧୀ କାର୍ଯ୍ୟକଳାପରେ ଦୋଷୀ ସାବ୍ୟସ୍ତ ହୋଇଥିବାରୁ ଭାରତରକ୍ଷା ଆଇନର ୩୮୫ ଓ ୩୪ ଖ ଧାରା ଅନୁସାରେ ୬ ମାସ ସଶ୍ରମ କାରାଦଣ୍ଡ ଓ ୩୦ ଟଙ୍କା ଜରିମାନା କରାଗଲା । ଜୋରିମାନା ଅନାଦେୟ ଅଧିକ ୨ମାସ ଜେଲ୍‌ଦଣ୍ଡ ଭୋଗ କରିବେ । ୧୨ ତାରିଖରେ ରବି ସିଂଙ୍କୁ କୋରାପୁଟ ଜେଲ୍ ପଠାଇ ଦିଆଗଲା ।

କୋରାପୁଟ ଜେଲ୍‌ରେ ୬ ମାସ ଦଣ୍ଡ ଭୋଗି ୨୩ ଜୁନ ୧୯୪୧ରେ ମୁକ୍ତ ହେଲେ ରବି ସିଂ । ଇତିମଧ୍ୟରେ ପତ୍ନୀ ଧନବତୀ ତାଙ୍କର ପ୍ରଥମ ପୁତ୍ରକୁ ଜନ୍ମ ଦେଇଥିଲେ । ପିତୃତ୍ୱର ଗୌରବରେ ବେଶିଦିନ କିନ୍ତୁ ଖୁସି ହେବାର ସୌଭାଗ୍ୟ ନଥିଲା ତାଙ୍କର । ଅଳ୍ପ ଦିନ ପରେ ଜ୍ୱର ଥଣ୍ଡାରେ ଆକ୍ରାନ୍ତ ହୋଇ ବାହୁଡିଗଲା ତାଙ୍କର ନୟନପିତୁଳା । ତାଙ୍କର ଅନୁପସ୍ଥିତିରେ ଜୋରିମାନା ଆଦାୟ କରିବାକୁ ଯାଇ ଉମରକୋଟ ପୋଲିସ ଏସ.ଆଇ. ତ୍ରିଲୋଚନ ମିଶ୍ର ଗୌନ୍ତିୟା ସୁମକାନ ପନକାର ସହାୟତାରେ ତାଙ୍କର ହଳେ ବଳଦ ଓ ହଳେ ପୋଢ ଛଡେଇ ନେଇଥିଲେ । ଜେଲ୍‌ରୁ ଫେରି ପୁତ୍ର ବିୟୋଗ ଏବଂ ପୋଲିସର ତାଙ୍କ ଘର ଉପରେ ଅତ୍ୟାଚାରର କରୁଣ କାହାଣୀ ଶୁଣି କିଛି ସମୟ ବିବ୍ରତ ହୋଇ ପଡିଥିଲେ ସଂଗ୍ରାମୀ । କିନ୍ତୁ ଏ ମାନସିକ ବିପର୍ଯ୍ୟୟ ଦେଶସେବାରୁ ତାଙ୍କୁ ବାଧା ଦେଇପାରିଲା ନାହିଁ । ପୁନଶ୍ଚ ଦ୍ୱିତୀୟ ଥର ସତ୍ୟାଗ୍ରହ କରିବା ପାଇଁ ସେ ଘୋଷଣା କଲେ । ଏଥର ସତ୍ୟାଗ୍ରହର ସ୍ଥାନ ଉମରକୋଟ ଥାନା ସମ୍ମୁଖ । ହାତରେ ତ୍ରିରଙ୍ଗା ଓ ମୁହଁରେ ଗାନ୍ଧିଜୀଙ୍କ ଜୟଗାନ କରି ଶହ ଶହ କର୍ମୀଙ୍କ ଗହଣରେ ଚାଲିଲେ ଉମରକୋଟ । ମଝିରେ ମଝିରେ ଆହ୍ୱାନ ଦେଉଥିଲେ ଯୁଦ୍ଧ ଚାନ୍ଦା ଦିଅନାହିଁ । ମାନ ନାହିଁ ସରକାରୀ ଗୋଲାମଙ୍କ କଥା । ଗୋରା ସରକାର ମୁର୍ଦ୍ଦାବାଦ । ସୌଭାଗ୍ୟକୁ ନବରଙ୍ଗପୁରର ବିଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ମହମ୍ମଦ ବାଜୀ ବ୍ୟକ୍ତିଗତ ସତ୍ୟାଗ୍ରହ ଘୋଷଣା କରି ରବି ସିଂଙ୍କ ସହିତ ମିଳିତ ହେଲେ । ସଂଯୋଗ ଘଟିଲା ମଣିକାଞ୍ଚନର । ଦୁଇ ସଂଗ୍ରାମୀ କଣ୍ଠରେ କଣ୍ଠ ମିଳାଇ ଭାରତ ମାତାର ଜୟଗାନ କଲେ ।

ନବରଙ୍ଗପୁର ଥାନା ସର୍କଲ ଇନ୍ସପେକ୍ଟର ଦୁହିଁଙ୍କୁ ଗିରଫ କରି ହାଟପଦାରୁ ଚଲେଇ ଚଲେଇ ନେଲେ । ୧୩ ଅଗଷ୍ଟ ୧୯୪୧ରେ ନବରଙ୍ଗପୁର ମାଜିଷ୍ଟ୍ରେଟଙ୍କ

ଅଦାଲତରେ ସେମାନଙ୍କର ବିଚାର କରାଯାଇ ଭାରତ ରକ୍ଷା ଆଇନ ୧୯୩୫ର ଧାରା ୩୮, ଉପଧାରା ୫ ଓ ୩୫ ୬ ଜି ଓ କ ଅନୁସାରେ ଦୁଇ ମାସ ସଶ୍ରମ କାରାଦଣ୍ଡ ସହିତ ୫୦ ଟଙ୍କା ଜୋରିମାନା ଓ ଅନାଦେୟ ଅଧିକ ଦୁଇମାସ ସଶ୍ରମ କାରାଦଣ୍ଡର ଆଦେଶ ଦିଆଗଲା । ପୁନଶ୍ଚ ଦ୍ୱିତୀୟ ବାର ଜେଲ୍ ଜୀବନ ଆରମ୍ଭ ହେଲା ରବି ସିଂ ଙ୍କର । ସେହି ପୁରୁଣା ଖାଦ୍ୟ ଦରସିଝା ଦରପୋଡା ମାଣ୍ଡିଆ ଚୂନାର ରୁଟି । ଗୋଡିମିଶା ଚାଉଳର ଭାତ । ଆମ୍ବିଳି ପେଜ ମିଶା ଡାଲି । ଏହାର ପ୍ରତିବାଦ କଲେ ମାଡ ମାରି ଲହୁଲୁହାଣ କରିଦିଆଯାଉଥିଲା ।

ଶ୍ରୀ ମାଝିଙ୍କ କାରାବାସ ସମୟରେ ବାଟିବେଡାରେ ତାଙ୍କର ପରିବାର ସଦସ୍ୟମାନେ ଅକଥନୀୟ ପୋଲିସ ନିର୍ଯ୍ୟାତନାର ଶିକାର ହେଲେ । ଥାନାଦାର ତ୍ରିଲୋଚନ ମିଶ୍ର ଜମାନମାନଙ୍କ ସହିତ ରବି ସିଂଙ୍କ ଉପରେ ହୋଇଥିବା ୫୦ ଟଙ୍କା ଜୋରିମାନା ଆଦାୟ କରିବାକୁ ସଦଳବଳେ ପହଞ୍ଚିଗଲେ । ଗୌନ୍ତିଆ ସୁନାଧର ପନକାଠାରୁ ସରକାରୀ ଖଜଣା ଟଙ୍କା ଛଡାଇ ନେଇଥିବା ମିଥ୍ୟା ଅଭିଯୋଗରେ ଗିରଫ କରାଗଲା ବାପା ପଟୁ ମାଝିଙ୍କୁ । ଜୋରିମାନା ୫୦ ଟଙ୍କା ଦେବାପରେ ତାଙ୍କୁ ମୁକ୍ତ କରାଯାଇଥିଲେ ମଧ୍ୟ ପରବର୍ତ୍ତୀ ଦୁଇ ବର୍ଷ ପଟୁ ମାଝୀ ଏହି ମୋକଦ୍ଦମାରେ ଅଦାଲତକୁ ଘୋଷରା ହେଉଥିଲେ । ୧୩ ଅକ୍ଟୋବର ୧୯୪୧ରେ ଦୁଇ ମାସ କାରାଦଣ୍ଡ ଭୋଗି ମୁକ୍ତ ହେଲେ ରବି ସିଂ । ଉମରକୋଟର ଏମିତି ଗାଁ ନଥିଲା, ଯେଉଁଠି ରବି ସିଂଙ୍କ ପାଦ ପଡିନଥିଲା । ଏମିତି ନଦୀ ନାଳ ନଥିଲା ଯାହାକୁ ସେ ଅତିକ୍ରମ କରିନଥିଲେ । ଏମିତି ପାହାଡ ପର୍ବତର ଅଭ୍ୟନ୍ତର ନଥିଲା, ଯେଉଁଠି ସେ କର୍ମୀମାନଙ୍କ ସହିତ ବସି ଆଂଦୋଳନର ବାର୍ତ୍ତା ପ୍ରଚାର କରିନଥିଲେ ।

ଶେଷରେ ଆସିଲା ଅଗଷ୍ଟ ବିପ୍ଳବର ଆହ୍ୱାନ । ମହାତ୍ମା ଗାନ୍ଧୀଙ୍କ 'କର ବା ମର'ର ଡାକରା କଂଗ୍ରେସ କର୍ମୀଙ୍କ ମଧ୍ୟରେ ଉତ୍ତାଳ ତରଙ୍ଗ ସୃଷ୍ଟି କଲା । ମହାତ୍ମା ଗାନ୍ଧୀଙ୍କ ବାର୍ତ୍ତା ଧରି ବମ୍ବେରୁ ଫେରୁଥିବା କୋରାପୁଟର ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ ସାଲୁର ଘାଟିରୁ ଗିରଫ କରାଗଲା । କିନ୍ତୁ ଗିରଫ ହେବା ପୂର୍ବରୁ ଗାନ୍ଧିଜୀଙ୍କ ଭାଷଣର ଛାପା ନକଲ ଓ 'ଭାରତଛାଡ ଆଂଦୋଳନ'ର କର୍ମୀମାନଙ୍କ ପାଇଁ ନିର୍ଦ୍ଦେଶାବଳୀ ସେ କୌଶଳରେ ନବରଙ୍ଗପୁରର ଲକ୍ଷ୍ମୀଚନ୍ଦ୍ର ଦାସ ଓ ଗୁଣୁପୁରର ବିଶ୍ୱନାଥ ପଟ୍ଟନାୟକଙ୍କ ନିକଟକୁ ପଠାଇବାରେ ସଫଳ ହୋଇଥିଲେ ସେ । ନବରଙ୍ଗପୁର କଂଗ୍ରେସ କାର୍ଯ୍ୟାଳୟରେ ଏହି ବାର୍ତ୍ତାର ହଜାର ହଜାର କପି ସାଇକ୍ଲୋଷ୍ଟାଇଲ ମେସିନରେ ଛପାଯାଇ ଗୁପ୍ତ ଭାବରେ ପଠାଇ ଦିଆଗଲା ଡାବୁଗାଁ ଓ ଉମରକୋଟ ଅଞ୍ଚଳକୁ । ପ୍ରଚାରପତ୍ର ପଠାଇବାର ଦାୟିତ୍ୱ ଥିଲା ସଦାନନ୍ଦ ମହାନ୍ତି ଓ ମହମ୍ମଦ ବାଜୀଙ୍କର । ତାଙ୍କଠାରୁ ରବି ସିଂ ପ୍ରଚାରପତ୍ର ଗ୍ରହଣ କରି ସମଗ୍ର ଉମରକୋଟରେ ବାଣ୍ଟିଲେ । ଏଥିରେ ଲେଖାଥିଲା, ଗାନ୍ଧୀ ମହାପ୍ରଭୁ କହିଲା ଆଚେ ସ୍ୱରାଜ କାଜେ ଲଡାଇ କରି ନିଜେ ନିଜର ନେତା ହେବାର । ସରକାର ବୋଲେ କେହି ନହିଁ । ଅହିଂସାରେ କାମ କର, ଟିକସ ମେଡି ଦିଅ । ପାନୁ ଓ ଗଡମ ମେଡି ଦିଅ । ଯୁଦ୍ଧ ଚାନ୍ଦା ଦିଅ ନହିଁ । ଗୋରା ସରକାର ଭାରତ ଛାଡ ।

୨୯ ଅଗଷ୍ଟ ୧୯୪୨ ସୋମବାର ଉମରକୋଟ ଥାନା ଘେରାଉ କରିବା ପାଇଁ ରବି ସିଂ ବାହାରିଲେ । ବନ୍ଦେ ମାତରମ ଧ୍ୱନିରେ ପ୍ରକମ୍ପିତ ହେଉଥାଏ ବଣ ପର୍ବତ । ପହଞ୍ଚିଗଲେ ଥାନା ସାମ୍ନାରେ । ଅଳ୍ପସଂଖ୍ୟକ ପୋଲିସ ଜମାନ କେତେକ ସ୍ଥାୟୀ ଓ ଅସ୍ଥାୟୀ ଫରେଷ୍ଟ ଗାର୍ଡଙ୍କୁ ନେଇ ଥାନାବାବୁ ଜଗିଥାନ୍ତି । କର୍ମୀମାନଙ୍କ ଲହରାୟିତ ସ୍ଳୋଗାନ ଶୁଣି ସେମାନଙ୍କ ହାତରେ ଲାଠି ଦେଖି ତତ୍କାଳୀନ ଥାନା ସରକାର ଇନ୍ସପେକ୍ଟର ବେଣୁଧର ଗଡନାୟକ ବାହାରକୁ ଆସି ନମ୍ର ଭାବରେ କହିଲେ, ଭାଇମାନେ ଆପଣମାନଙ୍କର ନଅ ଦିନ ଆଇନ ଅମାନ୍ୟ ଆନ୍ଦୋଳନ କରିବାର ଥିଲା । ଏବେ ସାତ ଦିନ ବିତି ଗଲାଣି । ଏଠାରେ କେହି ଗୋରା ଲୋକ ନାହାନ୍ତି । ଆମେ ସବୁ ତୁମରି ଲୋକ । ଗୋରା ସରକାରଙ୍କ ପାଖରେ ଚାକିରି କରୁଛୁ ମାତ୍ର ଏହି ଦେଶ ତୁମର ଯେତିକି ଆମର ମଧ୍ୟ ସେତିକି । ଶାନ୍ତି ବଜାୟ ରଖ । ଘରକୁ ଫେରିଯାଅ । ଶ୍ରୀ ଗଡନାୟକ ଥିଲେ ଉଦାର ପ୍ରକୃତିର ଲୋକ । ସଂଗ୍ରାମୀମାନଙ୍କ ପ୍ରତି

ଅନ୍ତରରେ ସଂବେଦନଶୀଳ ଥିଲେ ସେ । କିନ୍ତୁ ସଂଗ୍ରାମୀମାନେ ତାଙ୍କ କଥାକୁ କର୍ଣ୍ଣପାତ କଲେ ନହିଁ । ଗୋରା ସରକାର ଭାରତ ଛାଡ, ଭାରତ ଛାଡ, ଆମେ ସ୍ୱାଧୀନ ହେବୁ ନହେଲେ ମରିବୁ । ଭାରତ ମାତା କି ଜୟ ଓ ବନ୍ଦେ ମାତରମ ଧ୍ୱନିରେ ଗଗନ ପବନ ପ୍ରକମ୍ପିତ କଲେ । ହଠାତ୍ ଜଣେ ଜମାନ ସ୍ଲୋଗାନ ଦେଉଥିବା ଜନୈକ ସଂଗ୍ରାମୀଙ୍କ ମୁଣ୍ଡରେ ବନ୍ଧୁକ କୁନ୍ଦାରେ ପିଟି ଦେବାରୁ ସେ ଚିତ୍କାର କରି ତଳେ ପଡିଗଲେ । ଏଥିରେ ସଂଗ୍ରାମୀମାନଙ୍କର ରକ୍ତ ଗରମ ହେଇଗଲା । ସେମାନେ ଉତ୍ୟକ୍ତ ହୋଇ ପୋଲିସଙ୍କୁ ଆକ୍ରମଣ କରିବା ପାଇଁ ଥାନା ଆଡକୁ ମାଡିଗଲେ । ଜୀବନ ବିକଳରେ ଏସ୍.ଆଇ. ତ୍ରିଲୋଚନ ମିଶ୍ର ଦୁଇ ରାଉଣ୍ଡ ଫାଙ୍କା ଗୁଳି ଆବାଜ କଲେ । ତାଙ୍କର ଲକ୍ଷ୍ୟ ଥିଲା ରବି ସିଂଙ୍କୁ ଧରିବା । କିନ୍ତୁ ଅନ୍ଧାର ଓ ଗହଳିର ସୁଯୋଗ ନେଇ ସରାଗୁଡାର କର୍ମୀ ମଙ୍ଗଳୁ ପୂଜାରୀ ରବି ସିଂଙ୍କୁ ପୋଲିସ ହାତରୁ ଖସାଇ ନେଲେ । ନେତା ରହିଲେ ଆନ୍ଦୋଳନ ହେବ, ନେତା ନ ରହିଲେ କିଏ ନେତୃତ୍ୱ ନେବ ? ଭିଡ ଭିତରକୁ ରଜା ଘର ହାତୀ ଛାଡି ଦିଆଗଲା । ଝର ଝର ବର୍ଷା ଓ ବିଜୁଳି ଘଡଘଡି ମଧ୍ୟରେ ଆରମ୍ଭ ହେଲା ପୋଲିସର ଲାଠିମାଡ । ସଂଗ୍ରାମୀମାନେ ଛତ୍ରଭଙ୍ଗ ଦେଲେ । ସ୍ଥିର ବୁଦ୍ଧି ବେଣୁଧର ଗଡନାୟକ ମନେକଲେ କେବଳ ରବି ସିଂ ଙ୍କୁ ଧରି ଆଣିଲେ ଏ ସବୁର ସମାଧାନ ହେଇଯିବ । କିନ୍ତୁ ରବି ସିଂ ନଥିଲେ । ସେ ଗିରଫ ହେଲେ ଆନ୍ଦୋଳନରେ ଭଙ୍ଗା ପଡିଯିବା ଆଶଙ୍କା କରି କର୍ମୀମାନେ ତାଙ୍କୁ ପୂର୍ବରୁ ନେଇଯାଇଥିଲେ । ତଦନ୍ତରେ ଭଙ୍ଗା ପଡିବାରୁ ରବି ସିଂ ପରିବାରର ଗୁଜୁରାଣ ମେଣ୍ଟେଇବା ପାଇଁ ବେଙ୍ଗଲ ନାଗପୁର ରେଳବାଇରେ କୁଲି କାମ କଲେ । ଏହା କିନ୍ତୁ ଗୌନ୍ତିୟା ସୁକମନ ପନକାର ଦେହରେ ଗଲାନାହିଁ । କୌଶଳରେ ସେ ରବି ସିଂଙ୍କୁ ଧରି ଆଣି ପୋଲିସ ପାଖରେ ପହଞ୍ଚାଇ ଦେଲେ ।

ସରକାରୀ କର୍ମଚାରୀଙ୍କୁ ଆକ୍ରମଣ କରିବା ଓ ବେଆଇନ ମେଳି କରିବା ଅପରାଧରେ ଉମରକୋଟ ଥାନା ତାଙ୍କ ନାମରେ ଗିରଫ ପରୱାନା ଜାରି କଲା । ଏଥିପାଇଁ ତାଙ୍କୁ ୨୫.୦୮.୪୨ରୁ ୧୭.୧୦.୪୨ ଯାଏଁ ନବରଙ୍ଗପୁର ଜେଲରେ ଯମ ଯନ୍ତ୍ରଣା ଭୋଗିବାକୁ ପଡିଥିଲା ।

ଶେଷରେ ୧୫ ଅଗଷ୍ଟ ୧୯୪୭ରେ ମିଳିଲା ବହୁ ପ୍ରତୀକ୍ଷିତ ସ୍ୱାଧୀନତା । ଖଣ୍ଡିତ ଭାରତକୁ ନେଇ ସନ୍ତୁଷ୍ଟ ହେବାକୁ ପଡିଲା ଭାରତୀୟ ନେତୃବର୍ଗଙ୍କୁ । କେତେକ ଦୁଃଖରେ ଭାଙ୍ଗି ପଡୁଥିବା ବେଳେ କେତେକଙ୍କ ମାନସ ପଟ୍ଟରେ ହାତକୁ କ୍ଷମତା ଆସିବ ଭାବି ସ୍ୱପ୍ନର ଇନ୍ଦ୍ରଧନୁ ଝଲସି ଉଠୁଥିଲା । କାମାକ୍ଷାରୁ କଚ୍ଛ – ଆନନ୍ଦରେ ଆତ୍ମହରା ହେଲେ ଦେଶବାସୀ । ସବୁଆଡେ ଉତ୍ସବର ମାହୋଲ । ଉମରକୋଟ ଭଳି ଛୋଟ ସହରରେ ମଧ୍ୟ ଆୟୋଜିତ ହେଲା ପ୍ରଥମ ସ୍ୱାଧୀନତା ଦିବସ ଉତ୍ସବ । ବକଡାବେଡାର ହରିଶ୍ଚନ୍ଦ୍ର ଗୌଣ୍ଟିଆ, ବାଣୁଆଗୁଡାର ଦେବୀସିଂ ମାଝି, ବଡନୀର ଭଦ୍ର ଯାନୀ, ଖଣ୍ଡରାର ସରଧୁ ପୂଜାରୀ, ବାଇପଟିଭଟ୍ଟାର ଡମ୍ବରୁଧର ନାୟକ, ବାଟିବେଡାର ଜୟରାମ ବାସୁଦେବ, ପଲସାର ଗୁରୁ ଗଉଡ, ବୁଟୀସର୍ଗିର ଘାଷିରାମ ପନକା ଭାମିନୀ ଆସି ରବି ସିଂ ମାଝିଙ୍କୁ ଆନନ୍ଦାତିଶଯ୍ୟରେ କୁଣ୍ଢାଇ ପକାଇଲେ । ରବି ସିଂ ସେତେବେଳକୁ ଉମରକୋଟ ସଂଗ୍ରାମୀମାନଙ୍କର ଅଘୋଷିତ ଓ ଅପ୍ରତିଦ୍ୱନ୍ଦ୍ୱୀନେତା ହୋଇ ସାରିଥାନ୍ତି । ହୋଇସାରିଥାନ୍ତି ଗାନ୍ଧୀଜୀଙ୍କର ଚଳନ୍ତି ପ୍ରତିମା ।

ସେଦିନ ଉତ୍ତର ମଧ୍ୟାହ୍ନରେ ଉମରକୋଟର ସର୍ବମାନ୍ୟ ସ୍ୱାଧୀନତା ସଂଗ୍ରାମୀ ରବି ସିଂଙ୍କୁ ଉମରକୋଟର ହାଟପଦାରେ ପ୍ରସ୍ତୁତ ସୁସଜ୍ଜିତ ମଞ୍ଚ ନିକଟକୁ ପାଛୋଟି ଅଣାଗଲା । ଚତୁର୍ଦ୍ଦିଗରୁ ଲୋକଙ୍କ ସୁଅ ଛୁଟୁଥାଏ ଉମରକୋଟ । ମହୁରି, ନାଗରା, ମାଦଳ, ଢାପରେ ଝଙ୍କାରିତ ହେଉଥିଲା ସାରା ଉମରକୋଟ । ସିଂସାରିରୁ ରାଇଘର, ବକୋଦାରୁ ଝରିଗାମ ଶହଶହ ଲୋକ । ହାତରେ ତ୍ରିରଙ୍ଗା ଧରି ଗାନ୍ଧିଜୀ ଓ ରବି ସିଂଙ୍କର ଜୟଗାନ କରି ମଞ୍ଚ ନିକଟରେ ରୁଣ୍ଡ ହେଲେ । ସେଦିନ ରବି ସିଂ ମାଝି ସ୍ୱାଧୀନ ଭାରତର ଜନତାଙ୍କୁ ଯେଉଁ ଉଦ୍‌ବୋଧନ ଦେଇଥିଲେ, ତାହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା ...

ଭାଇମାନେ, ବେଶି କଷ୍ଟ ପଡି ଆମର ଦେଶ ସ୍ୱାଧୀନ ହେଲା, ଆମର ଲକ୍ଷ୍ମଣ ନାୟକ, ବଗା ପୂଜାରୀ, ଶହୀଦ ହେଲେ । ଦେକି ନପାରିଲେ ଏମିତି ଦିନର ଖୁସି । ଏବେ ବେଠି ଉଠିଗଲା । ଗଡମ ଉଠିଗଲା । ହାଟପାହାରିଆ, ଡୋଲି ବୁହା ଉଠିଗଲା । ଆମର ଦେଶ ଆମର ହେଲା, ଭାଇ ମାନେ, ଆମେ ସତ କହିବ । ହିଂସା କରିବା ନହିଁ । କାହାକୁ ଡରିବା ନହିଁ । ଦେଶର ମର୍ଯ୍ୟାଦା ରଖିବା । ଏ ମାଟି ମା'ର ପିଲାମାନେ ଆମେ । ଭାରତ ମାତାର ଜୟ ।

୧୧ ନଭେମ୍ବର ତାଙ୍କର ପିତାମହ ଘଟି ମାଝି ପରଲୋକ ଗମନ କଲେ । ଆଖି ଛଳଛଳ ହେଇଗଲା ରବି ସିଂଙ୍କର । ଦିନେ ଡୋଲିବୁହାରେ ନିଯୁକ୍ତ ଥିବା ବେଳେ ପୋଲିସ ଅଧିକାରୀଙ୍କ ମୂତ୍ରରେ ମୁଣ୍ଡ ତାଙ୍କର ଓଦା ହୋଇଯାଇଥିଲା । ପରାଧୀନ ଭାରତର ଅନେକ ଦୁଃଖ ଯନ୍ତ୍ରଣା ଗର୍ଭସ୍ଥ କରିଥିଲେ ଘଟି ମାଝି । ସ୍ୱାଧୀନତା ପରେ ନବନିଯୁକ୍ତ ମନ୍ତ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ନବରଙ୍ଗପୁରର କର୍ମୀମାନଙ୍କୁ ତାଙ୍କର ପ୍ରଥମ ଉଦ୍‌ବୋଧନରେ କହିଲେ, ଭାଇମାନେ ଆଗର ସରକାରର ଲୋକମାନେ ଆପଣମାନଙ୍କୁ ଘୃଣା କରୁଥିଲେ, ଏବେ ସାଙ୍ଗରେ ବସି ଖାଉଛନ୍ତି । ଏମାନେ ସ୍ୱାଧୀନତା ଆଗରୁ ଯାହା କରିଥିଲେ, ହୁକୁମ ମାନି କରିଥିଲେ, ଏବେ ଦେଶ ସ୍ୱାଧୀନ ହେଲା । ସମସ୍ତେ ସମାନ ଭାବରେ ଜୀଇଁବା । ଏମାନଙ୍କୁ ନିଜର ଭାଇ ବୋଲି କ୍ଷମା କରିଦିଅ । ଗାନ୍ଧୀ ମହାପ୍ରଭୁ ଏୟା ହିଁ କହିଛନ୍ତି ।

ଅତ୍ୟାଚାରରେ ଦେହହାତ ସିଝି ଯାଇଥିବା ରବି ସିଂ ମାଝି ଏହାର ଦୃଢ ପ୍ରତିବାଦ କଲେ । ସେଦିନ ଗୁରୁପ୍ରତିମ ବିଶ୍ୱାସରାୟଙ୍କୁ ନିର୍ଭୀକ ଭାବରେ କହିଲେ, ବାବୁ, ଆପଣ ଯେତେବେଳେ ଜେଲ୍‌ରୁ ଫେରିଲେ, ଆପଣଙ୍କର ଘର ଥିଲା, ଦ୍ୱାର ଥିଲା, ହେଲେ ଯାହାର ଜେଲ୍‌ରୁ ଆସିଲା ପରେ ଘର ଗଲା, ହଳ ବଳଦ ଏମାନେ ସବୁ ଛଡାଇ ନେଲେ, ଘରର ମାଇଜି ଝିଆରି ସବୁକେ ଜଣେ ଜଣେ ଝିଙ୍କି ନେଲେ । ଘରେ ଖାଣ୍ଡେକ ଥୁଟି ବାଡେଣି ନ ରଖ ଲାଇନି, ନିର୍ଦ୍ଦୋଷ ଲୋକ ମାନକେ, ଅପ୍ରବଳ ପିଟଲାଇନି, ହାତ ଗୋଡ ଭାଙ୍ଗି ଦେଲାଇନି, ସେମିତି ଲୋକ ଏମାନ କେ ଭାଇ ବୋଲସି କି ? ଦେବତା ହେଲେ ସିନା ହେଇସି, ମନୁଷ ହେଇକରି ନ ହେଇପାରେ ।

ନେତାଙ୍କ ଦୋମୁହାଁ ଆଚରଣରେ କ୍ଷୁବ୍ଧ ରବି ସିଂଙ୍କ ନିର୍ଭୀକ ମତ ଅନ୍ୟମାନଙ୍କୁ ପ୍ରଭାବିତ କଲା । ଗତକାଲି ଯିଏ ସଂଗ୍ରାମକୁ ବିରୋଧ କରୁଥିଲେ ଶାସକର ଚାଟୁକାର ସାଜି ସଂଗ୍ରାମୀ ଓ ବନବାସୀମାନଙ୍କୁ ହଇରାଣ ହରକତ କରୁଥିଲେ – ସେମାନେ କ୍ଷମତାରେ ରହିବାକୁ ତାଙ୍କର ସମସ୍ତ କଳବଳ ଲଗାଇ ଦେଇଛନ୍ତି । ରବି ସିଂ ନାଚାର ଥିଲେ । ତାଙ୍କ ପ୍ରତିବାଦ କିଏ ଶୁଣୁଛି । ଯନ୍ତ୍ରଣାରେ ଛଟପଟ ହେଲେବି ନୀରବ ରହୁଥିଲେ ସେ । ସ୍ୱାଧୀନତା ପରେ ରବି ସିଂ ମାଝି ୪୮ରୁ ୫୦ ପର୍ଯ୍ୟନ୍ତ ଆଶ୍ରମ ବିଦ୍ୟାଳୟରେ ଶିକ୍ଷକ ହେଲେ । ନେତାମାନଙ୍କର କ୍ଷମତା ଲୋଭରେ ବିଚଳିତ ହୋଇ ଲକ୍ଷ୍ମୀଚନ୍ଦ୍ର ଦାସଙ୍କ ପରାମର୍ଶରେ ସେ ୩୦ ଟଙ୍କିଆ ଚାକିରି ଛାଡି ପୁନଃ ଲୋକସେବା କରିବା ପାଇଁ ଆଗେଇ ଆସିଲେ । କ୍ରମେ ନିର୍ବାଚନୀ ରାଜନୈତିକ ଜୀବନ ଆରମ୍ଭ ହେଲା ତାଙ୍କର । ପୂର୍ବରୁ ସାଧାରଣ ନିର୍ବାଚନ ମଣ୍ଡଳୀ ଥିବା ଉମରକୋଟ ୧୯୬୭ ଚତୁର୍ଥ ବିଧାନସଭାଠାରୁ ସଂରକ୍ଷିତ ଆସନ ଘୋଷିତ ହେଲା । ରବି ସିଂ ମାଝି କଂଗ୍ରେସ ପ୍ରାର୍ଥୀ ରୂପେ ନିଜର ସାଧୁତା, ନିଃସ୍ୱାର୍ଥପରତା ଏବଂ ଜନସେବାକୁ ପୁଞ୍ଜି କରି ନିର୍ବାଚନ ଲଢି ଜିତିଲେ । ସେ ଥିଲେ ଉମରକୋଟ ସଂରକ୍ଷିତ ଆସନରୁ ପ୍ରଥମ ଜନଜାତି ବିଧାୟକ । ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଗଢା ହେଲା ଉତ୍କଳ କଂଗ୍ରେସ ଦଳ । ରବି ସିଂ ମାଝି ଦ୍ୱିତୀୟ ଥର ପଞ୍ଚମ ବିଧାନସଭାରେ ୨୧.୦୧.୧୯୭୨ରୁ ୧୪.୦୬.୧୯୭୨ ପର୍ଯ୍ୟନ୍ତ ସଦସ୍ୟ ରହି ବିଶ୍ୱନାଥ ଦାସଙ୍କ ମୁଖ୍ୟମନ୍ତ୍ରିତ୍ୱରେ ଗଠିତ ସ୍ୱତନ୍ତ୍ର ଓ ଉତ୍କଳ କଂଗ୍ରେସ ସରକାରରେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର ଉପମନ୍ତ୍ରୀ ପଦରେ ରହିଲେ । କିନ୍ତୁ ମନ୍ତ୍ରିମଣ୍ଡଳ ଅଳ୍ପଦିନ ସ୍ଥାୟୀ ହେଲା ଏବଂ ୧୯୭୪ରେ ଅନୁଷ୍ଠିତ ହେଲା ଷଷ୍ଠ ବିଧାନସଭା । ରବି ସିଂ ମାଝି ତୃତୀୟଥର ପାଇଁ ଉତ୍କଳ କଂଗ୍ରେସରୁ ବିଧାୟକ ରୂପେ ନିର୍ବାଚିତ ହେଲେ ।

ନନ୍ଦିନୀ ଶତପଥୀଙ୍କ ନେତୃତ୍ୱରେ ଉକ୍ତ ବିଧାନସଭା ମଧ୍ୟ ମାତ୍ର ତିନି ବର୍ଷରେ ଭାଙ୍ଗିଯାଇ ୧୯୭୭ରେ ସପ୍ତମ ବିଧାନସଭା ନିର୍ବାଚନ ଅନୁଷ୍ଠିତ ହେଲା । ସପ୍ତମ ବିଧାନ ସଭା ନିର୍ବାଚନରେ ରବି ସିଂ ଜନତା ଦଳର ପ୍ରାର୍ଥୀ ରୂପେ ଚତୁର୍ଥ ଥର ନିର୍ବାଚନରେ ବିଜୟର ବରମାଲ୍ୟ ପିନ୍ଧିଲେ । ନୀଳମଣି ରାଉତରାୟଙ୍କ ନେତୃତ୍ୱରେ ଗଠିତ ମନ୍ତ୍ରିମଣ୍ଡଳରେ ସେ ହେଲେ ଅବକାରୀ ମନ୍ତ୍ରୀ । ଆଜୀବନ ମଦକୁ ବିରୋଧ କରୁଥିବା ସଂଗ୍ରାମୀଙ୍କୁ ମିଳିଲା ଅବକାରୀ ବିଭାଗ । ନିଜର ପ୍ରବଳ ଅନିଚ୍ଛା ସର୍ବଦଳୀୟ କର୍ମକର୍ତ୍ତାଙ୍କ ଅନୁରୋଧରେ ସେ ବାଧ୍ୟହୋଇ ମନ୍ତ୍ରୀ ପଦ ଗ୍ରହଣ କଲେ । ସେ ଏପରି ଜଣେ ନିର୍ଲୋଭ ଓ ସଚ୍ଚୋଟ ଥିଲେ, ଦୀର୍ଘ ଚଉଦବର୍ଷ କ୍ଷମତା ରାଜନୀତିରେ ରହିଥିଲେ ମଧ୍ୟ କୌଣସି ଅନ୍ୟାୟ, ଦୁର୍ନୀତି, ପ୍ରିୟାପ୍ରୀତି ତୋଷଣ ତାଙ୍କୁ ସ୍ପର୍ଶ କରି ନଥିଲା ।

ସେ ସଚ୍ଚା ସଂଗ୍ରାମୀ ଥିଲେ, ସତ୍ୟ ଓ ସରଳତା ଥିଲା ତାଙ୍କ ଭୂଷଣ । ଜୀବନର କୌଣସି ପରିସ୍ଥିତିରେ ସେ ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ନିଜ କ୍ଷମତାକୁ ଉପଯୋଗ କରିନାହାନ୍ତି । ଫାର୍ମହାଉସ କିମ୍ବା ରଖିଯାଇ ନାହାନ୍ତି ବିଶାଳ ପ୍ରାସାଦ ଓ ବିପୁଳ ଭୂସମ୍ପତ୍ତି । ପିଲାମାନଙ୍କ ପାଇଁ ସେ ରଖି ନାହାନ୍ତି ଗାଡିଘୋଡା କିମ୍ବା ଲୋଭନୀୟ ବ୍ୟାଙ୍କଜମା କାରଣ ଏସବୁ ତାଙ୍କୁ ଆଇନସିଦ୍ଧ ଆୟ ମଧ୍ୟରେ ସମ୍ଭବ ନଥିଲା । ଆଚରଣ ଓ ଉଚ୍ଚାରଣରେ ସାଲିସ କରୁନଥିଲେ ସେ । ୧୯୮୦ରେ ଅଷ୍ଟମ ବିଧାନସଭା ନିର୍ବାଚନରେ ଶ୍ରୀମତୀ ପରମା ପୂଜାରୀଙ୍କଠାରୁ ପରାଜିତ ହୋଇ ସେ ଏକ ପ୍ରକାର ରାଜନୀତିରୁ ସନ୍ନ୍ୟାସ ନେଇଥିଲେ । ରାଜନୀତିର ପରିଭାଷା ସେ ସମୟକୁ ଧୀରେ ଧୀରେ ବଦଳି ଯାଉଥିଲା । ୨୪ ଜୁନ ୨୦୦୩ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ପ୍ରତ୍ୟେକ ମୁହୂର୍ତ୍ତକୁ ସେ ସମାଜସେବା ଓ ଦେଶସେବାରେ ବିନିଯୋଗ କରି ଯେଉଁ ଦୃଷ୍ଟାନ୍ତ ଛାଡି ଯାଇଛନ୍ତି, ତାହା ଆଜିର ବିଧାୟକ ଓ କ୍ଷମତାଧାରୀଙ୍କ ପାଇଁ ଶିକ୍ଷା ହୋଇ ରହିବ । ତାଙ୍କର ମୃତ୍ୟୁ ସହିତ ଜିଲ୍ଲା ଓ ରାଜ୍ୟ ରାଜନୀତିରୁ ଯେଭଳି ଜଣେ ସଂଗ୍ରାମୀ, ଜଣେ ନେତା ଓ ଜଣେ ଦେଶସେବକଙ୍କର ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି ହେଲା, ତାହା ଭବିଷ୍ୟତରେ ପୂରଣ ହେବା ଅସମ୍ଭବ ।

**ସହାୟକ ଗ୍ରନ୍ଥସୂଚୀ**

୧ . ଅନଟୋଲ୍ଡ ଷ୍ଟୋରି ଅଫ୍ ରବି ସିଂ ମାଝି – ଡକ୍ଟର ବିନୋଦିନୀ ଦାସ, ଓଡିଶା ରିଭ୍ୟୁ, ଜାନୁଆରୀ ୨୦୦୫ ।

୨. ଜଣେ ସ୍ୱାଧୀନତା ସଂଗ୍ରାମୀର କାହାଣୀ – ରବି ସିଂ ମାଝି – ଶ୍ରୀ ସୁବାସ ଚନ୍ଦ୍ର ମିଶ୍ର ।

ନୂଆବନ୍ଧ ସାହି
ଜିଲ୍ଲା–ନବରଙ୍ଗପୁର



# ମାନବତାର ପୂଜାରୀ ରାମକୃଷ୍ଣ ପରମହଂସ

**ଜୟଶଙ୍କର ନାୟକ**

ରାମକୃଷ୍ଣ ପରମହଂସ ଜଣେ ମହାନ୍ ଯୋଗୀ, ଉଚ୍ଚକୋଟୀର ସାଧକ ଓ ଆଧ୍ୟାତ୍ମିକ ଗୁରୁ ଥିଲେ । ଈଶ୍ୱର ଉପଲବ୍ଧି ପାଇବା ପାଇଁ ବହୁପଥ ରହିଛି, ନିଜ ନିଜର ମାନସିକତା ଅନୁଯାୟୀ ଯିଏ ଯେଉଁ ପଥରେ ଅନୁଗାମୀ ହେଲେ ସେ ନିଶ୍ଚୟ ଈଶ୍ୱରଙ୍କୁ ପାଇପାରିବ ବୋଲି ସେ ମାନବ ସମାଜକୁ ଦର୍ଶାଇ ଥିଲେ । ମାନବତାର ପୂଜାରୀ ରାମକୃଷ୍ଣ ପରମହଂସ ଭାରତର ଜଣେ ମହାନ୍ ସନ୍ଥ, ଆଧ୍ୟାତ୍ମିକ ଗୁରୁ ଏବଂ ଅବତାର ପୁରୁଷ ହୋଇପାରିଥିଲେ । ଈଶ୍ୱରଙ୍କୁ ପାଇବା ପାଇଁ ସେ କଠୋର ସାଧନା ଓ ଭକ୍ତିର ଜୀବନ ଅତିବାହିତ କରିଥିଲେ ।

ମାନବିକ ମୂଲ୍ୟବୋଧର ଏହି ସନ୍ଥଙ୍କର ଜନ୍ମ ୧୮୩୬ ମସିହା ଫେବୃୟାରୀ ମାସ ୧୮ ତାରିଖ ଦିନ ପଶ୍ଚିମବଙ୍ଗ ସ୍ଥିତ କମାରପୁକୁର ଗ୍ରାମରେ । ବାଲ୍ୟକାଳରୁ ସାଧୁ ସନ୍ଥମାନଙ୍କ ପ୍ରତି ତାଙ୍କ ମନରେ ଦୁର୍ବଳତା ଦେଖା ଦେଇଥିଲା । ଭାରତର ପୁରାଣରେ ପ୍ରହ୍ଲାଦ ଏବଂ ଧ୍ରୁବ ଆଦିଙ୍କ ଚରିତ୍ର ତାଙ୍କୁ ବହୁତ ଆକୃଷ୍ଟ କରିଥିଲା । ତାଙ୍କ ବଡ ଭାଇ ରାମକୁମାର ଚଟ୍ଟୋପାଧ୍ୟାୟ କୋଲକାତାରେ ଏକ ପାଠଶାଳାର ସଞ୍ଚାଳକ ଥିଲେ । ୧୭ ବର୍ଷ ବୟସରେ ସେ ନିଜ ସହିତ ତାଙ୍କୁ କୋଲକାତା ନେଇ ଆସିଥିଲେ । ରାମକୃଷ୍ଣଙ୍କ ଅନ୍ତର୍ମନ ନିଶ୍ଚଳ, ସହଜ ଓ ବିନୟଶୀଳ ଥିଲା । ସଂକୀର୍ଣ୍ଣତାରୁ ବହୁତ ଦୂରରେ ରହି ମନ ତାଙ୍କର ଅଧ୍ୟୟନ ଓ ଅଧ୍ୟାପନାରେ ଲାଗିପାରିଲା ନାହିଁ । ତାଙ୍କ ବଡଭାଇଙ୍କୁ ଦକ୍ଷିଣେଶ୍ୱର କାଳୀ ମନ୍ଦିରର ମୁଖ୍ୟ ପୂଜାରୀ ଭାବରେ ନିଯୁକ୍ତ କରାଯାଇଥିଲା । ରାମକୃଷ୍ଣଙ୍କୁ (ଗଦାଧର)ଙ୍କୁ



ଦେବୀପ୍ରତିମା ସଜେଇବାର ଦାୟିତ୍ୱ ଦିଆଯାଇଥିଲା । ୧୮୫୬ ମସିହାରେ ରାମକୁମାରଙ୍କ ମୃତ୍ୟୁ ପରେ ରାମକୃଷ୍ଣଙ୍କୁ କାଳୀମନ୍ଦିରର ପୁରୋହିତ ଭାବରେ ନିଯୁକ୍ତି କରାଯାଇଥିଲା । କାଳୀମାତାଙ୍କ ମୂର୍ତ୍ତିକୁ ସେ ବ୍ରହ୍ମାଣ୍ଡର ମାତାଙ୍କ ରୂପରେ ଦର୍ଶନ କରିଥିଲେ । ବଡଭାଇଙ୍କ ଦେହାନ୍ତ ପରେ ତାଙ୍କ ମନରେ ବୈରାଗ୍ୟ ଭାବ ଜାଗ୍ରତ ହେଲା । ପଞ୍ଚବଟୀରେ ସେ ତପସ୍ୟା ଓ ସାଧନା କଲେ ।

ମାତା ଚନ୍ଦ୍ରମଣି ଦେବୀ ପୁତ୍ରର ଏପରି ଅବସ୍ଥା ଦେଖି ଶାରଦାମଣି ଚଟ୍ଟୋପାଧ୍ୟାୟଙ୍କ ସହିତ ରାମକୃଷ୍ଣଙ୍କୁ ବିବାହ ବନ୍ଧନରେ ବାନ୍ଧି ଦେଇଥିଲେ । ବିବାହ ବନ୍ଧନର କାର୍ଯ୍ୟ ସରିବା ପରେ ସେ ପୁନର୍ବାର ଦକ୍ଷିଣେଶ୍ୱର ପ୍ରତ୍ୟାବର୍ତ୍ତନ କରି ସେଠାରେ ମା' କାଳୀଙ୍କର ପୂଜାରେ ନିଜକୁ ସମର୍ପିତ କରିଥିଲେ ।

ରାମକୃଷ୍ଣ ପରମହଂସ ମାତା କାଳୀଙ୍କ ପରମ ଭକ୍ତ ଥିଲେ । ତାଙ୍କ ପାଇଁ ଦେବୀ କାଳୀ କୌଣସି ଦେବୀ ନୁହନ୍ତି, ବରଂ ଜୀବନ୍ତ ବାସ୍ତବତା ଥିଲେ । ତାଙ୍କ ଆବାହନରେ ମା' ଆସୁଥିଲେ ଏବଂ ତାଙ୍କୁ ଆନନ୍ଦବିଭୋର କରି ଦେଉଥିଲେ । ତାଙ୍କ ପାଇଁ ଏହା ଏକ ସତ୍ୟ ଅନୁଭବ ଥିଲା । ଏହି ଅନୁଭବ ପ୍ରବଳ ହେବା ମାତ୍ରେ ସେ ଆନନ୍ଦରେ ବିଭୋର ହୋଇଯାଉଥିଲେ । ସାଧାରଣ ଅବସ୍ଥାରୁ ନାଚିଗାଇ ଝୁମି ଉଠୁଥିଲେ । ଯେତେବେଳେ ସେ ସାମାନ୍ୟ ଅନ୍ୟ ମନସ୍କ ହୋଇଯାଉଥିଲେ କାଳୀ ମା'ଙ୍କଠାରୁ ତାଙ୍କର ସମ୍ପର୍କ ତୁଟି ଯାଉଥିଲା । ସେ ଶିଶୁଭଳି କାନ୍ଦିବା ଆରମ୍ଭ କରିଦେଉଥିଲେ । ରାମକୃଷ୍ଣଙ୍କ ଚେତନା ଏତେ ଦୃଢ଼ ପ୍ରଖର ଥିଲା ଯେ ସେ ଯେଉଁ ରୂପରେ ଚାହୁଁଥିଲେ ମାତା ତାଙ୍କ ସମ୍ମୁଖରେ ସେହି ରୂପରେ ପ୍ରକଟ ହୋଇ ଯାଉଥିଲେ । ଏପରି ସ୍ଥିତି କୌଣସି ମନୁଷ୍ୟ ପାଇଁ ସୁଖଦ ହୋଇଥାଏ । ତେବେ ରାମକୃଷ୍ଣଙ୍କ ଶରୀର, ମନ ଓ ଭାବନା ଏହି ପରମାନନ୍ଦର ଅନୁଭୂତି କରୁଥିଲେ ମଧ୍ୟ ତାଙ୍କର ଅସ୍ତିତ୍ୱ ଏହି ସ୍ଥିତିଠାରୁ ଊର୍ଦ୍ଧ୍ୱକୁ ଯିବା ଲାଗି ଚାହୁଁଥିଲା । ତାଙ୍କ ମନରେ ଏକ ସଚେତନତା ଥିଲା ଯେ ଏହି ପରମାନନ୍ଦ ହୁଏତ ଏକ ବନ୍ଧନ । ଶେଷରେ ପ୍ରୟାସ କରି ଏହି ବନ୍ଧନରୁ ସେ ମୁକ୍ତି ପାଇପାରିଥିଲେ । ତାଙ୍କ ପାଇଁ ସବୁ ସ୍ଥିତି ସମାନ ଥିଲା । ସୁଖ – ଦୁଃଖ, ହାନି – ଲାଭ, ପ୍ରାପ୍ତି – ଅପ୍ରାପ୍ତିଠାରୁ ସେ ଦୂରକୁ ଯାଇପାରିଥିଲେ । ନିଜ ଭିତରେ ହିଁ ମା' କାଳୀ ଅର୍ଥାତ୍ ପରମାତ୍ମାଙ୍କ ସତ୍ତାକୁ ଜାଗ୍ରତ କରିପାରିଥିଲେ । ଏହା ପରେ ସେ ସମଗ୍ର ସଂସାରକୁ ମାର୍ଗଦର୍ଶନ କରିବାରେ ବ୍ରତୀ ହୋଇଥିଲେ । ରାମକୃଷ୍ଣ କହୁଥିଲେ, ମାତୃସ୍ୱରୂପା କାଳୀଙ୍କୁ ପ୍ରାପ୍ତ କରିବାର ଅର୍ଥ ହେଉଛି, ସବୁକିଛି ପାଇଯିବା । ଜ୍ଞାନର ଏକ ଅମାପ ଭଣ୍ଡାର ପ୍ରାପ୍ତ କରିନେବା । ସେ ମା' କାଳୀଙ୍କ ମୂର୍ତ୍ତି ସମ୍ମୁଖରେ ଶିଶୁଙ୍କ ଭଳି ବ୍ୟବହାର କରୁଥିଲେ । ସେ ମାତାଙ୍କ ପ୍ରତି ସମ୍ପୂର୍ଣ୍ଣ ସମର୍ପିତ ଥିଲେ । ରାମକୃଷ୍ଣ ମା' କାଳୀଙ୍କୁ ପ୍ରତ୍ୟକ୍ଷ ଅନୁଭବ କରିପାରୁଥିଲେ ।

୧୮୮୦ ମସିହାରେ ନରେନ୍ଦ୍ରନାଥ ଦତ୍ତ ତାଙ୍କଠାରୁ ଈଶ୍ୱରଙ୍କ ସମ୍ପର୍କରେ ଜିଜ୍ଞାସା କରିବା ପାଇଁ ଆସିଥିଲେ । ସେ ହିଁ ତାଙ୍କର ପରମ ଶିଷ୍ୟ ରୂପେ ପରିଗଣିତ ହୋଇ ପରବର୍ତ୍ତୀ ସମୟରେ ବିବେକାନନ୍ଦ ରୂପେ ବିଶ୍ୱରେ ପ୍ରସିଦ୍ଧି ଅର୍ଜନ କରିଥିଲେ । ସ୍ୱାମୀ ବିବେକାନନ୍ଦ ତାଙ୍କର ପ୍ରିୟ ଶିଷ୍ୟ ଥିଲେ । ଜୀବନରେ ଲକ୍ଷ୍ୟ ହାସଲ ପାଇଁ ନିଷ୍ଠାପର ଭାବରେ ନିରନ୍ତର ପ୍ରୟାସ ଜାରି ରଖିବା ଆବଶ୍ୟକ । ଏ ସମ୍ପର୍କରେ ଏକ ସୁନ୍ଦର କାହାଣୀ ରହିଛି । ଥରେ ସ୍ୱାମୀ ରାମକୃଷ୍ଣ ପରମହଂସ ଜଣେ ଶିଷ୍ୟଙ୍କ ସହିତ ନଦୀକୂଳରେ ବୁଲୁଥିଲେ । କେତେଜଣ କୈବର୍ତ୍ତ ନଦୀ ଜଳରେ ଜାଲ ପକାଇ ମାଛ ଧରିବାରେ ବ୍ୟସ୍ତ ଥିଲେ । କିଛି ମାଛ ଜାଲରେ ପଡୁଥିଲେ ଓ ଛଟପଟ ହେଉଥିଲେ । ତାହା ଦେଖି ରାମକୃଷ୍ଣ ଶିଷ୍ୟଙ୍କୁ କହିଲେ, ମାଛଗୁଡ଼ିକୁ ଭଲ ଭାବରେ ଦେଖ । ଜାଲରୁ ମୁକ୍ତି ପାଇବା ପାଇଁ ସମସ୍ତ ମାଛ ଚେଷ୍ଟା କରୁଛନ୍ତି । ମାତ୍ର ସେମାନଙ୍କ ମଧ୍ୟରୁ ଅଳ୍ପ କେତୋଟି ମାଛ ହିଁ ପ୍ରାଣ ବଞ୍ଚାଇବାରେ ସଫଳ ହେବେ । ଶିଷ୍ୟ ଜଣକ ଅବୁଝା ଆଖିରେ ଚାହିଁଲା ରାମକୃଷ୍ଣ ପରମହଂସଙ୍କୁ । ଶିଷ୍ୟ ମନରେ ଥିବା ଦ୍ୱନ୍ଦ୍ୱ ଦୂର କରିବାକୁ ସେ ବୁଝାଇଲେ – ''ଦେଖ, ଏହି ଜାଲରେ ତିନି ପ୍ରକାର ମାଛ ଅଛନ୍ତି । ପ୍ରଥମ ସେହିମାନେ, ଯେଉଁମାନେ କି ଧରି ନେଇଛନ୍ତି ଜାଲରେ ପଡିବା ପରେ ତାଙ୍କ ମୃତ୍ୟୁ ସୁନିଶ୍ଚିତ । ତେଣୁ ବଞ୍ଚିବା ପାଇଁ ସେମାନେ ଆଦୌ ଚେଷ୍ଟା କରୁନାହାନ୍ତି । ଦ୍ୱିତୀୟ ପ୍ରକାରର ମାଛ ଅଳ୍ପ ସମୟ ଚେଷ୍ଟା କରିବେ, ତା' ପରେ ଶାନ୍ତ ହୋଇ ମୃତ୍ୟୁ ଲଭିବେ । ତୃତୀୟ ପ୍ରକାରର ମାଛମାନେ ପୂରା ଶକ୍ତି ସହିତ ଜାଲରୁ ମୁକ୍ତି ପାଇଁ ଲଗାତର ପରିଶ୍ରମ କରୁଛନ୍ତି । କେବଳ ଏହି ମାଛମାନେ ହିଁ ନିଜ ନିଜର ଜୀବନ ବଞ୍ଚାଇ ପାରିବେ । ଠିକ୍ ଏହିପରି ମନୁଷ୍ୟ ମଧ୍ୟ ତିନି ପ୍ରକାର । ପ୍ରଥମ ପ୍ରକାରର ମଣିଷମାନେ ଦୁଃଖ

ଦୁର୍ଦ୍ଦଶାକୁ ନିଜର ଭାଗ୍ୟରେ ଅଛି ବୋଲି ଧରିନିଅନ୍ତି ଓ ତାହାକୁ ବଦଳାଇବାକୁ ଚେଷ୍ଟା ହିଁ କରନ୍ତି ନାହିଁ । ଯେଉଁମାନେ ଦ୍ୱିତୀୟ ପ୍ରକାରରେ ଅନ୍ତର୍ଭୁକ୍ତ, ସେମାନେ ଦୁଃଖ ଦୂର କରିବାକୁ ଚେଷ୍ଟା ତ କରନ୍ତି ମାତ୍ର ଅଳ୍ପ କିଛି ଦିନ ପରେ ଅଧୈର୍ଯ୍ୟ ହୋଇପଡନ୍ତି ଓ ପରାଜୟକୁ ସ୍ୱୀକାର କରନ୍ତି । ମାତ୍ର ତୃତୀୟ ପ୍ରକାରର ଲୋକମାନେ ନିଷ୍ଠାପର ଭାବେ ନିରନ୍ତର ପ୍ରୟାସରତ ଥାଆନ୍ତି ଓ ଲକ୍ଷ୍ୟ ହାସଲ କଲା ପରେ ହିଁ ବିଶ୍ରାମ ନିଅନ୍ତି ।

ସେହିପରି ଓଟ କଣ୍ଟାବୁଦାରୁ ପତ୍ର ଖାଇବାକୁ ଭଲ ପାଏ । ଯେତେ ଯେତେ ଅଧିକ ଖାଇବାକୁ ମନ କରେ ପାଟି ତା'ର ସେତିକି ଅଧିକ ଅଧିକ କ୍ଷତ ବିକ୍ଷତ ହୁଏ । ରକ୍ତ ବୋହିଚାଲେ ପାଟିରୁ । ତଥାପି ଓଟ କଣ୍ଟା ବୁଦାରୁ ଖାଇବା ଛାଡେ ନାହିଁ, ଛାଡିବ ମଧ ନାହିଁ, ମଣିଷ ଠିକ୍ ସେହିପରି । ମଣିଷର ପାର୍ଥିବ ଲାଳସା ଦୁଃଖ – କଷ୍ଟ ହେଉଥିଲେ ମଧ ତାହାକୁ ଏଡାଇ ପାରେ ନାହିଁ ସେ । କଷ୍ଟ ଭୋଗୁଥିବା ସମୟରେ ଭଗବାନଙ୍କୁ ଡାକି ପର ମୁହୂର୍ତ୍ତରେ ପୁଣି ଭୁଲିଯାଏ । ଭଗବାନ ହେଉଛନ୍ତି ଉଭୟ ବିଦ୍ୟା ଏବଂ ଅବିଦ୍ୟାର ସମାହାର । ମାୟା ରୂପକ ବିଦ୍ୟା ମଣିଷକୁ ଭଗବାନଙ୍କ ନିକଟବର୍ତ୍ତୀ କରାଉଥିବା ବେଳେ ଅବିଦ୍ୟା ତାକୁ ଭଗବନାଙ୍କଠାରୁ ଦୂରେଇ ଦିଏ । ଜ୍ଞାନ, ସମର୍ପଣ ଭାବ, ଅନାସକ୍ତି ଏବଂ କରୁଣା ଆଦିକୁ ବିଦ୍ୟା ସାହାଯ୍ୟରେ ଭଗବାନଙ୍କ ନିକଟରେ ପହଞ୍ଚି ହୁଏ । ସବୁ ମଣିଷଙ୍କ ଭିତରେ ଭଗବାନ ବିଦ୍ୟମାନ କିନ୍ତୁ ଭଗବାନ ଭିତରେ ସବୁ ମଣିଷ ନଥାନ୍ତି ଏଣୁ କଷ୍ଟ ଭୋଗନ୍ତି ।''

ସରଳ, ନିରାଡମ୍ବର ଓ ନୀତିପୂର୍ଣ୍ଣ ଜୀବନଯାପନ କରି ବହୁ ଶିଷ୍ୟ ସୃଷ୍ଟି କରିପାରିଥିଲେ ରାମକୃଷ୍ଣ ପରମହଂସ । ତାଙ୍କର କଠୋର ଆଧାତ୍ମିକ ଅଭ୍ୟାସ ଓ ସିଦ୍ଧିର ଖବର ଦ୍ରୁତ ଗତିରେ ପ୍ରଚାରିତ ହେଲା ଓ ଦକ୍ଷିଣେଶ୍ୱର ମନ୍ଦିରର ଉଦ୍ୟାନ ଭ୍ରମଣଶୀଳ ସନ୍ନ୍ୟାସୀମାନଙ୍କର ଆଶ୍ରୟସ୍ଥାନ ହୋଇଗଲା । ତାଙ୍କ ଶିଷ୍ୟମାନେ ତାଙ୍କୁ ଠାକୁର ନାମରେ ଡାକୁଥିଲେ । ସେଥିପାଇଁ ରାମକୃଷ୍ଣ ପରମହଂସ ଜଣେ ମହାନ୍ ଯୋଗୀ, ଉଚ୍ଚକୋଟୀର ସାଧକ ଓ ଆଧାତ୍ମିକ ଗୁରୁଥିଲେ ।

ଈଶ୍ୱର ଉପଲବ୍ଧି ପାଇଁ ବହୁ ପଥ ରହିଛି, ନିଜ ନିଜର ମାନସିକତା ଅନୁଯାୟୀ ଯିଏ ଯେଉଁ ପଥରେ ଅନୁଗାମୀ ହେଲେ ନିଶ୍ଚୟ ସେ ଈଶ୍ୱରଙ୍କୁ ପାଇପାରିବ ବୋଲି ମାନବ ସମାଜକୁ ଦର୍ଶାଇଥିଲେ । ସେ ଅନେକ ଭକ୍ତଙ୍କ ସହିତ ଈଶ୍ୱରଙ୍କ ଆରାଧନାରେ ମଗ୍ନ ରହୁଥିଲେ । ଶେଷରେ ୧୮୮୬ ମସିହା ଅଗଷ୍ଟ ୧୬ ତାରିଖ ଦିନ ରାମକୃଷ୍ଣ ପରମହଂସଙ୍କର ଦେହାନ୍ତ ହୋଇଥିଲା ।

ଗ୍ରାମ/ପୋଅ : ଖିଚିଂ, ଜିଲ୍ଲା : ମୟୂରଭଞ୍ଜ
ପିନ୍ : ୭୫୭୦୩୯



# ପ୍ରାବନ୍ଧିକ ଚନ୍ଦ୍ରଶେଖର ରଥଙ୍କ ପ୍ରବନ୍ଧରେ ଦାର୍ଶନିକ ବୋଧିବାଦ

ଡକ୍ଟର ସଂଘମିତ୍ରା ଭଂଜ

ଆଧୁନିକ ଓଡ଼ିଆ ସାହିତ୍ୟରେ ଅପରିସୀମ ଭାବ ଓ ଭୂମାର ସମ୍ଭ୍ରାନ୍ତ ଶିଳ୍ପୀ, ଆଦର୍ଶବାଦର ଉଦାର ଗାୟକ ଥିଲେ ପଦ୍ମଶ୍ରୀ ଚନ୍ଦ୍ରଶେଖର ରଥ । ଲେଖକଟିଏ ସର୍ବଦା



ନିଜ ଚେତନାକୁ ନିଜ ଭିତରୁ ମୁକ୍ତ କରିବାକୁ ଚାହେଁ । ବିପୁଳା ପୃଥିବୀରେ ବିଚିତ୍ର ଜୀବନ ବୃକ୍ଷର ପ୍ରତିଟି ଅଗମ୍ୟ ଅଂଶ ଭିତରକୁ ଗତିକରି ଊର୍ଦ୍ଧ୍ୱାୟିତ ଚେତନାକୁ ସାହିତ୍ୟ ଦେଇ ଅଭିବ୍ୟକ୍ତ କରିଥିବା ସେହି ମହାମନୀଷୀ ପ୍ରଫେସର ଚନ୍ଦ୍ରଶେଖର ରଥ ବାସ୍ତବିକ ରୂପେ କେତେ ଯେ ଅନନ୍ୟ ତାହା ଅଚିନ୍ତନୀୟ । ଜଣେ ସୃଜନ ଶିଳ୍ପୀ ରୂପେ ତାଙ୍କ ସୃଷ୍ଟି ନିଶ୍ଚିତ ରୂପେ ଶକ୍ତିଶାଳୀ ତଥା ଆବେଗଦୀପ୍ତ । ତାଙ୍କ ସାରସ୍ୱତ ସାଧନା ପାର୍ଥିବ ବିଳାସମୟ ପ୍ରାଚୁର୍ଯ୍ୟର ଢ଼େର୍ ଊର୍ଦ୍ଧ୍ୱରେ ଥିଲା ସମର୍ପିତ, ଉନ୍ମୁକ୍ତ–ଚିତ୍–ଆନନ୍ଦର ଅବଧାରକ ଓ ପ୍ରତିଷ୍ଠାପକ । ସେ ଥିଲେ ଆପାଦମସ୍ତକ ଜଣେ ବୈଦିକ ସଂସ୍କୃତସଂପନ୍ନ ନିଷ୍ଠାପର ବ୍ରହ୍ମବେତ୍ତା ଓ ଶ୍ରୀମା ଅରବିନ୍ଦଙ୍କ ପ୍ରଭାବିତ ସମୁଚ୍ଚ ମାନସିକତାର ଅଧିକାରୀ ।

ବଲାଙ୍ଗୀର ଜିଲ୍ଲାର ଟିକ୍ରାପଡ଼ା ଗ୍ରାମରେ ୧୯୨୯ ମସିହା ଅକ୍ଟୋବର ୧୭ ତାରିଖ କୁମାର ପୂର୍ଣ୍ଣିମାରେ ପିତା କେଳେଇ ରଥ ଏବଂ ମାତା ଚମ୍ପା ଦେବୀଙ୍କ କୋଳମଣ୍ଡନ କରିଥିଲେ ସେ । ବଲାଙ୍ଗୀର ହାଇସ୍କୁଲର ଜଣାଶୁଣା ଶିକ୍ଷକ ହେଡ଼ମାଷ୍ଟର ବାଳମୁକୁନ୍ଦ ହୋତାଙ୍କ ମୂଲ୍ୟବୋଧପୂର୍ଣ୍ଣ ଆଦର୍ଶରେ ସେ ଅନୁପ୍ରାଣିତ ଥିଲେ । ଶ୍ରୀ ରଥ ସଂସ୍କୃତ ଓଡ଼ିଆ ଇଂରାଜୀ, ହିନ୍ଦୀ, ଉର୍ଦ୍ଦୁ, ବଙ୍ଗଳା, କୋଶଳୀ ତଥା ସମ୍ବଲପୁରୀ ସାହିତ୍ୟରେ ବହୁ ପାରଦର୍ଶୀ ଥିଲେ । ଇଂରାଜୀ ଭାଷା ସାହିତ୍ୟରେ ଅଧ୍ୟୟନ ଓ ଅଧ୍ୟାପନା କରିଥିଲେ ହେଁ, ଓଡ଼ିଆ ଭାଷାରେ ନିଜକୁ ଆତ୍ମପ୍ରକାଶ କରିବାର ଆତ୍ମତୃପ୍ତି ପ୍ରଦାନ କରିଛି ବୋଲି ସେ ସ୍ୱୀକାର କରିଛନ୍ତି । ତାଙ୍କ ମତରେ– ‘‘ଜନ୍ମ ହେଲାବେଳେ ଯେପରି ଦେଶ କାଳକୁ ପିତାମାତାଙ୍କୁ ଅନିବାର୍ଯ୍ୟ ସ୍ୱୀକାର କରିବାକୁ ହୁଏ, ସେହିପରି ମଧ୍ୟ ସ୍ୱୀକାର କରିବାକୁ ହୁଏ ଯେ ବ୍ୟକ୍ତିଟି ଏକ ଭାଷାବଳୟ ଓ ସାଂସ୍କୃତିକ ପରମ୍ପରା ଭିତରେ ହିଁ ଆବିର୍ଭୂତ ହୁଏ । ଇଂରାଜୀରେ କହିବା ବା ଲେଖିବା ମୋର ବୃତ୍ତି କିନ୍ତୁ ଓଡ଼ିଆରେ ଆତ୍ମପ୍ରକାଶ କରିବାକୁ ହେଲେ, ସେ ଭାଷାର ଆତ୍ମାକୁ ସ୍ପର୍ଶ କରିବାକୁ ହୁଏ । ସେ ଭାଷାକୁ ବଞ୍ଚିବାକୁ ହେଲେ ସେ ଭାଷାର ଆତ୍ମାକୁ ସ୍ପର୍ଶ କରିବାକୁ ହୁଏ ।’’

ସାରଳା ଦାସଙ୍କ 'ମହାଭାରତ' ଜଗନ୍ନାଥ ଦାସଙ୍କ 'ଭାଗବତ' ଏବଂ କବିସୂର୍ଯ୍ୟ ବଳଦେବ ରଥ, କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ, ଗଙ୍ଗାଧର ତଥା ରାଧାନାଥଙ୍କ ଭଳି ଯଶସ୍ୱୀ ସ୍ରଷ୍ଟାଙ୍କର ସୃଷ୍ଟିଦ୍ୱାରା ସେ ପ୍ରଭାବିତ ଥିଲେ । ଏତଦ୍‌ଭିନ୍ନ ଆଧୁନିକ ସମୟର ଓଡ଼ିଆ, ବଙ୍ଗଳା, ହିନ୍ଦୀ ତଥା ଇଂରାଜୀ ସାହିତ୍ୟର ବହୁ ବିଶିଷ୍ଟ ସାହିତ୍ୟିକଙ୍କ ଦ୍ୱାରା ସେ ପ୍ରଭାବିତ ହୋଇଥିବା ସ୍ୱୀକାର କରିଛନ୍ତି । ତାଙ୍କ ଶବ୍ଦରେ:''ଫକୀର ମୋହନ ବା ଟଲ୍‌ଷ୍ଟୟଙ୍କୁ ପଢ଼ିବାବେଳେ ମୁଁ ଯେତେ ମାତ୍ରାରେ ଆବିଷ୍ଟ ଓ ଆଚ୍ଛନ୍ନ ହୋଇଯାଏ ସେମିତି ହାର୍ମାନ୍ ହେସ୍ ବା ଫକ୍‌ରନ୍‌ଙ୍କୁ ପଢ଼ିବାବେଳେ ବା ରବୀନ୍ଦ୍ରନାଥ କିମ୍ବା ମହାଦେବୀ ବର୍ମାଙ୍କୁ ପଢ଼ିଲାବେଳେ ମୁଁ ବିଭୋର ହୋଇଯାଏ ।'' ମହାବାଗ୍ମୀ ଶ୍ରୀ ରଥ ଇଂରାଜୀ ଏବଂ ଆଇନ୍ ସମ୍ମାନରେ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଏବଂ ଲକ୍ଷ୍ନୌ ତଥା ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟରୁ ସମ୍ମାନଜନକ ଡ଼ି. ଲିଟ୍ ଉପାଧି ଲାଭ କରିଥିଲେ । ୧୯୫୨–୧୯୮୫ ମସିହା ମଧ୍ୟରେ ବିଭିନ୍ନ ମହାବିଦ୍ୟାଳୟରେ ଅଧ୍ୟାପନା କାର୍ଯ୍ୟ ସଂପାଦନ କରି ୧୯୮୭ ମସିହାରେ ଶିକ୍ଷା ବିଭାଗରୁ ଅବସରପ୍ରାପ୍ତ ହୋଇଥିଲେ । ପରବର୍ତ୍ତୀ ସମୟରେ କର୍ମଯୋଗୀ ଶ୍ରୀ ରଥ ୧୯୮୭ରୁ ୧୯୯୫ ପର୍ଯ୍ୟନ୍ତ 'ସନ୍ ଟାଇମ୍‌ସ'ର ସମ୍ପାଦନା ଓ ସମ୍ବାଦ'ର ସଂପାଦକୀୟ ପୃଷ୍ଠା ପରିଚାଳନା କରିବା ସଙ୍ଗେ ସଙ୍ଗେ ଆଶା, ଆସ୍ପୃହା ତଥା ଶତଭିଷା ଇତ୍ୟାଦି ଉଚ୍ଚକୋଟୀର ପତ୍ରିକାର ପ୍ରତିଷ୍ଠାତା ଓ ଉପଦେଷ୍ଟା ରୂପେ କାର୍ଯ୍ୟ କରିଥିଲେ ।

ତାଙ୍କର ଉତ୍କର୍ଷପୂର୍ଣ୍ଣ ସାରସ୍ୱତ ସାଧନା ଓଡ଼ିଆ ବାଣୀ ଭଣ୍ଡାରର ଶ୍ରୀସମୃଦ୍ଧ କରିଛି । ଉପନ୍ୟାସରେ ଯନ୍ତ୍ରାରୂଢ଼, ଅସୂର୍ଯ୍ୟ ଉପନିବେଶ, ନବଜାତକ ଆଦି ଗଳ୍ପ କ୍ଷେତ୍ରରେ, 'ଅନେକ ବନ୍ୟାପରେ', ଅଶ୍ୱାରୋହୀର ଗଳ୍ପ, ସମ୍ରାଟ୍ ଓ ଅନ୍ୟମାନେ, ଅନ୍ୟ ଏକ ସକାଳ, ସବୁଯାକ ସ୍ୱପ୍ନ, ବାଘ ସବାର, ଏତେ ପାଖରେ ସମୁଦ୍ର, ବିକ୍ରିପାଇଁ ଫୁଲମାଳ, ସ୍ୱପ୍ନବାହକ, ସବୁଠାରୁ ଦୀର୍ଘରାତି, ଅନ୍ତିମା, କ୍ରମଶଃ ଗଭୀର ନଈ, ଚନ୍ଦ୍ରଶେଖର କଥା ସରିତ, ଶିଖର ଲଂଘନ, ନାଗାନ୍ତକ ବିଦ୍ୟା, ସନ୍ଧିକାଳ ଇତ୍ୟାଦି, କବିତା ସଂକଳନରେ ତୁମ ପାଇଁ ପକ୍ଷୀଗାନ, ଆଗକୁ ବନସ୍ତ, ମୋ ଘର ବହୁତ ଦୂର, ସୀମାନ୍ତ ସମୁଦ୍ର, ଆଦ୍ୟୋପ୍ରାନ୍ତ କବିତା ସମାହାର ଇତ୍ୟାଦି, ନିବନ୍ଧରେ ରଥ ସପ୍ତକ, ଅନୁବାଦରେ ଶାଙ୍କର ଗୀତା ଭାଷ୍ୟ ଓ ସାଗର ବିହଙ୍ଗ ଇତ୍ୟାଦି ପ୍ରମୁଖ ଅଟେ ।

ଲଳିତ ନିବନ୍ଧ ସାହିତ୍ୟ କ୍ଷେତ୍ରରେ ତାଙ୍କ ଐଶୀ ଲେଖନୀର ପଟାନ୍ତର ନାହିଁ । ଲଳିତ ନିବନ୍ଧ ସଂକଳନଗୁଡ଼ିକ ମଧ୍ୟରେ ରହିଛି, ''ଦୃଷ୍ଟି ଓ ଦର୍ଶନ, ଏ ଯେଉଁ ପୃଥିବୀ, ମୁଁ ସତ୍ୟଧର୍ମା କହୁଛି, ମଧୁସନ୍ଧାନ, ଉତ୍ତର ଅରଣ୍ୟ, ଅଶ୍ରୁତର ସ୍ୱର, କ୍ରୀତଦାସର ସ୍ୱପ୍ନ, ବିଶେଷ କଥନ, ଲଘୁ ସଂହିତା ଇତ୍ୟାଦି ଉଲ୍ଲେଖନୀୟ ସୃଷ୍ଟି । ତାଙ୍କ ଏକାଗ୍ର ସାରସ୍ୱତ ସାଧନା ନିମନ୍ତେ ଶ୍ରୀ ରଥଙ୍କୁ ୧୯୭୩ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ (ଉପନ୍ୟାସ: ଅସୂର୍ଯ୍ୟ ଉପନିବେଶ), ୧୯୭୮ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ (ପ୍ରବନ୍ଧ ସଂକଳନ: ଅଶ୍ରୁତର ସ୍ୱର), ୧୯୮୨ ମସିହାରେ ସାରଳା ପୁରସ୍କାର (ଗଳ୍ପ ସଂକଳନ:ସମ୍ରାଟ୍ ଓ ଅନ୍ୟମାନେ), ୨୦୧୦ରେ ଅତିବଡ଼ୀ ଜଗନ୍ନାଥ ଦାସ ପୁରସ୍କାର: ଓଡ଼ିଶା ସାହିତ୍ୟ ଏକାଡ଼େମୀର ସର୍ବୋଚ୍ଚ ପୁରସ୍କାର, ୨୦୧୫ରେ ଉତ୍କଳ ସାହିତ୍ୟ ସମାଜର ବରେଣ୍ୟ ସଦସ୍ୟ ସମ୍ମାନ ତଥା ୨୦୧୮ରେ ପଦ୍ମଶ୍ରୀ ସମ୍ମାନ ପ୍ରାପ୍ତ ହୋଇଛନ୍ତି ।

ଶ୍ରୀ ରଥଙ୍କ ଭିତରେ ଥିଲା ଜଣେ ଅଧ୍ୟାପକର ନୀତିବୋଧ ଆଦର୍ଶ, ଥିଲା ଜଣେ ସଚେତନଶୀଳ ଜାଗୃତ ଆତ୍ମଶକ୍ତି ଏବଂ ମଣିଷ ପଣିଆର ଦ୍ୟୁତି । ବୃତ୍ତିରେ ସେ ଥିଲେ ଅଧ୍ୟାପକ କିନ୍ତୁ ନିଶାରେ ଥିଲେ ଜଣେ ଚିତ୍ରକର ଏବଂ ସାହିତ୍ୟିକ । ଜଣେ ଚିତ୍ରଶିଳ୍ପୀ ଭାବରେ କାଠୁଅ, ପଥର ଖୋଦେଇ ମୂର୍ତ୍ତି, ପଟ୍ଟଚିତ୍ର ଗଢ଼ିବା ସହିତ ସେ ଥିଲେ ଜଣେ କ୍ରୀଡ଼ାବିତ୍, ବ୍ୟାଖ୍ୟାକାର, ଭାଷ୍ୟକାର ମଧ୍ୟ । ଯେଉଁ ହାତରେ ତୂଳୀ ଧାରଣ କରିଛନ୍ତି ସେହି ହାତରେ କାରୀଗର ଭଳି ପଥର କାଟିଛନ୍ତି ଏବଂ କଲମ ଧାରଣ କରି ସେହି ରୂପକୁ ଶବ୍ଦରେ ଯୋଡ଼ିଛନ୍ତି ।

ସେ ଲେଖୁଥିଲେ କାରଣ ନ ଲେଖି ବଞ୍ଚିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ଲେଖିବା ଥିଲା ମଣିଷର ଶ୍ୱାସକ୍ରିୟା

ପରି ତାଙ୍କ ପାଇଁ ଏକ ସ୍ୱାଭାବିକ କର୍ମ । ତାଙ୍କ ବ୍ୟକ୍ତିଙ୍କ ଜୀବନ ଧର୍ମ ସହିତ ସାହିତ୍ୟ ସାଧନାର ଐଶୀତ୍ୱ ଏକୀଭୂତ ହୋଇଯାଇଥିଲା । ଆର୍ଯ୍ୟ ଋଷିଙ୍କ ଦ୍ୱାରା ପ୍ରଦତ୍ତ ଦୀର୍ଘ ଜୀବନର ସୂତ୍ର ସାମାଜିକ, ନୈତିକ ଆଧ୍ୟାତ୍ମିକ ବିଧି-ବିଧାନ, ଐତିହ୍ୟ ସଚେତନତା, ସଂସ୍କୃତି ପ୍ରାଣତା କ୍ଷେତ୍ରରେ ଶ୍ରୀ ରଥ ଏ ଯୁଗର ଜଣେ ପ୍ରତିଦିନ ହସ୍ତାକ୍ଷର । ସମଗ୍ର ଭାରତବର୍ଷରେ ଓଡ଼ିଆ ମନୀଷା ଓ ବୌଦ୍ଧିକତାର ସେ ଥିଲେ ସାର୍ଥକ ପ୍ରତିନିଧି । ସେ ସଂସ୍କୃତ, ଦର୍ଶନ, ମନସ୍ତତ୍ତ୍ୱ, ଉପନିଷଦ ଓ ଧର୍ମ-ଶାସ୍ତ୍ରାଦିକୁ ନିଜ ସୃଜନରେ ଆତ୍ମସ୍ଥ କରିଥିବା ପ୍ରଚଣ୍ଡ ବୋଧିବାଦୀ ଶିଳ୍ପୀ । ସେ ଥିଲେ ସତ୍ୟଦ୍ରଷ୍ଟା । ଜଗତକୁ ଦେଖିବାର ତାଙ୍କ ଦୃଷ୍ଟିକୋଣ ଥିଲା ଭିନ୍ନ । ଶ୍ରୀ ରଥଙ୍କ ମତରେ ''ଭଲ ଦେଖିପାରୁନଥିବା ବ୍ୟକ୍ତି ଭଲ ଲେଖିପାରିବ ନାହିଁ ।'' ସେ ଚିତ୍ରଧର୍ମୀ ଗଦ୍ୟଶୈଳୀର ଶ୍ରେଷ୍ଠ ବିନ୍ଧାଣି । କଳ୍ପିତ ପୃଥିବୀ ସହିତ ପାଠକକୁ ଏକୀଭୂତ କରିପାରୁଥିବା ଅଦ୍ଭୁତ ସଂଯୋଗ ସେତୁ । ଆଧୁନିକ ଯୁଗର ଅନନ୍ୟ ଶବ୍ଦ ସ୍ଥପତି । ଶାଳୀନ- ସଂଯମିତ ଶବ୍ଦକୁ ନେଇ ତାଙ୍କ କମକୁଟା ଶବ୍ଦ କାରିଗରୀ କୌଣସି ବିସ୍ମୟକର ସ୍ଥାପତ୍ୟରୁ କମ୍ ନୁହେଁ । ସେ ଥିଲେ ସମୁଚ୍ଚ ଭାବର ବାହକ ତଥା ଭୂମାର ପୂଜକ । ସେ କହନ୍ତି – ''ଭାଷା କୌଣସି ପଥ କାନ୍ଥ ଭିତରେ ଅବରୁଦ୍ଧ ନୁହେଁ । କବିତା ଯେମିତି ଗଦ୍ୟାରୂଢ଼ ହେବା ଦେଖାଯାଏ, ଗଦ୍ୟ ମଧ୍ୟ ସେଇଭଳି କବିତା ହେବାର – ଦେଖାଯାଏ । .... ଗୋଟିଏ ଦିଗରେ ହୁଏତ ମନ୍ତ୍ରପୂତ ବିଶୁଦ୍ଧ କବିତା ତରଳ, ମୃଦୁଳ, ସୂକ୍ଷ୍ମ ଏବଂ ଅନ୍ୟ ଦିଗରେ ଚାରି କୋଣିଆ ନିବିଡ଼ ଗଦ୍ୟ ।''

ତାଙ୍କର ସମଗ୍ର ସୃଷ୍ଟି ଭିତରେ ମୁକ୍ତାତୁଲ୍ୟ ଜାଜ୍ୱଲ୍ୟମାନ ''ରଥ ସପ୍ତକ' ଏକ କାଳଜୟୀ ନିବନ୍ଧ ଗ୍ରନ୍ଥ । ଏହା ଏକପ୍ରକାର 'ଜଗନ୍ନାଥ ଗୀତା' କହିଲେ ଅତ୍ୟୁକ୍ତି ହେବ ନାହିଁ । ସମାଲୋଚକମାନଙ୍କ ମତରେ ଏକମାତ୍ର 'ରଥ ସପ୍ତକ' ଲେଖିଥିଲେ ମଧ୍ୟ ଓଡ଼ିଶା ସାହିତ୍ୟ ଇତିହାସରେ ସେ ପ୍ରତିଷ୍ଠିତ ଓ ଅମର ହୋଇଯାଇଥାନ୍ତେ । ଘୋଷଯାତ୍ରାର ପୁଣ୍ୟତିଥି ଅବସରରେ ଦୀର୍ଘ ୧୩ ବର୍ଷ ଧରି ଲେଖିଥିବା ୧୩ ଗୋଟି ନିବନ୍ଧର ଅତି ଭାବାବିଷ୍ଟ – ଆଧ୍ୟାତ୍ମିକ ସୃଷ୍ଟି ଅଟେ 'ରଥ ସପ୍ତକ' । ଗଳ୍ପ, ଉପନ୍ୟାସ କ୍ଷେତ୍ରରେ ସ୍ଥିତିବାଦ, ଆଶାବାଦ ଓ ଆଦର୍ଶବାଦୀ ଆତ୍ମପ୍ରତ୍ୟୟ ସ୍ୱର ଅନୁରଣିତ ହୋଇଛି । କାଳ୍ପନିକ ଜଗତଟିଏ ସୃଷ୍ଟି କରି ତା' ଭିତରେ ସନାତନ ଆଦର୍ଶ ପ୍ରତିଷ୍ଠା ନିମନ୍ତେ ବ୍ୟାକୁଳତା ତାଙ୍କ ମହତ୍ତର ଜୀବନାଦର୍ଶକୁ ଉପସ୍ଥାପିତ କରିଛି ।

ଅଜସ୍ର ନିବନ୍ଧର ସେ ସ୍ରଷ୍ଟା, ବିଚାର ଓ ଆଦର୍ଶର ସାବଲୀଳ ସୁରମ୍ୟ ଅଟ୍ଟାଳିକା ରୂପେ ତାଙ୍କ ନିବନ୍ଧଗୁଡ଼ିକ ସଂପର୍କରେ ପଦ୍ମଶ୍ରୀ ମନୋଜ ଦାସ ମତ ଦିଅନ୍ତି- ''ସଂଯତ ଭାଷା ଓ ଉନ୍ନତ ଭାବର ଯେଭଳି ସାବଲୀଳ ଅଭିବ୍ୟକ୍ତି ତାଙ୍କ କଣ୍ଠରେ ସମ୍ଭବ ହୁଏ, ତାହାର ଦୃଷ୍ଟାନ୍ତ କ୍ୱଚିତ୍ କାହିଁ ମିଳିଥାଏ ।'' ତାଙ୍କ ରଚନାଗୁଡ଼ିକ ଭିତରେ ବେଦ, ଉପନିଷଦ, ଗୀତା, ଭାଗବତ, ମହାଭାରତ, ରାମାୟଣର ମହନୀୟ ମୂଲ୍ୟବୋଧ ନିହିତ । ଏତଦ୍‌ବ୍ୟତୀତ ବୁଦ୍ଧ, ଶଙ୍କର, ବିବେକାନନ୍ଦ, ଶ୍ରୀ ଅରବିନ୍ଦ, ମହାତ୍ମା ଗାନ୍ଧୀଙ୍କ ଭଳି ପ୍ରାଚ୍ୟ ମନୀଷୀ ତଥା ସକ୍ରେଟିସ୍, ପ୍ଲାଟୋ, ଆରିଷ୍ଟଟଲ, କାମ୍ୟୁ, କାଫ୍‌କା, ଫ୍ରଏଡ୍, ସାର୍ତ୍ତେଙ୍କ ଭଳି ପାଶ୍ଚାତ୍ୟ ମନୀଷୀଙ୍କ ଆଧ୍ୟାତ୍ମିକ- ଦାର୍ଶନିକ ମୂଲ୍ୟବୋଧ ଅନୁଭୂତ ହୁଏ । ପ୍ରଜ୍ଞାଳୟ ଦ୍ୱାରା ପ୍ରକାଶିତ ପଦ୍ମଶ୍ରୀ ଚନ୍ଦ୍ରଶେଖର ରଥଙ୍କର ନିବନ୍ଧ 'ଏ ଯେଉଁ ପୃଥିବୀ' 'ଦୃଷ୍ଟି ଓ ଦର୍ଶନ', ମୁଁ ସତ୍ୟଧର୍ମା କହୁଛି, ମଧୁ ସନ୍ଧାନ, ଉତ୍ତରଅରଣ୍ୟ' 'ଅଶ୍ରୁତର ସ୍ୱର' ଏବଂ 'କ୍ରୀତଦାସର ସ୍ୱପ୍ନ' ଇତ୍ୟାଦି ସାତଗୋଟି ନିବନ୍ଧର ଏକତ୍ର ସଂକଳନ ଅଟେ । ଏହି ସଂକଳନସ୍ଥ ନିବନ୍ଧଗୁଡ଼ିକ ସଂପର୍କରେ କହନ୍ତି – '' ଆପଣମାନଙ୍କର ପରିଚିତ କୌଣସି ସଂଜ୍ଞାରେ ସିଧା ସଳଖ ପଡ଼ିପାରୁନଥିବାରୁ, ଏ ପ୍ରକାର ନିବନ୍ଧକୁ ଆପଣ ଅପାଂକ୍ତେୟ କହିବା ପରିବର୍ତ୍ତେ 'ରମ୍ୟରଚନା' କହିଥାନ୍ତି ।'' (ଗ୍ରନ୍ଥାବଳୀ- ପ୍ରଥମ ପୃଷ୍ଠା-୫)

ଏ ଯେଉଁ ପୃଥିବୀ' ପୁସ୍ତକସ୍ଥ ୨୦ ଗୋଟି ରମ୍ୟରଚନାରେ ଆଧୁନିକ ସମାଜ ଉପଯୋଗୀ ବହୁ ତାତ୍ତ୍ୱିକ ବିଚାର ରହିଛି । ଆଜିର ପୃଥିବୀ ସଂପର୍କରେ ସୂଚନା ଦେବାକୁ ଯାଇ ଶ୍ରୀ ରଥ ଏକଦା କହିଥିଲେ-''ଯୁଗ ଶାପଗ୍ରସ୍ତ ହେଲେ

ଯୁଗନ୍ଧର ପୁରୁଷମାନେ ସ୍ୱୟଂ ହୀନପ୍ରଭ ହୋଇ ମଉଳି ଯାନ୍ତି । ଭୀମାର୍ଜ୍ଜୁନ ପରି ବଳିଷ୍ଠ ଯୋଦ୍ଧାମାନେ ନିଷ୍ପ୍ରଭ – ପୌରୁଷ ନେଇ ଉଦ୍‌ବାସ୍ତୁ ବନଚାରୀରୂପେ ଭ୍ରମଣ କରନ୍ତି । ସେତେବେଳେ ସ୍ୱୟଂ ଧର୍ମପୁରୁଷ ମଳିନ ଅଜ୍ଞାତବାସ ବରଣ କରିଥାନ୍ତି । ସେଭଳି ଯୁଗର ସୂର୍ଯ୍ୟ କେତୁଗ୍ରସ୍ତ, ହିମାଦ୍ରିମଣ୍ଡିତ ପୃଥିବୀ ଛାୟାଚ୍ଛନ୍ନ''(ଚନ୍ଦ୍ରଶେଖର ରଥ –ନିବନ୍ଧ ସଂଗ୍ରହ– ପ୍ରଥମ ପୃଷ୍ଠା) । ସତ୍ୟଦ୍ରଷ୍ଟା ଶ୍ରୀ ରଥ 'ଅନନ୍ୟା ପୃଥିବୀ'ର ଉଦ୍ଧାର ଗାୟକ ସାଜିଛନ୍ତି । ଅତି ସାବଲୀଳ ଢଙ୍ଗରେ ବିଜ୍ଞାନସମ୍ମତ ବିଚାର ଉପସ୍ଥାପିତ କରି ପୃଥିବୀର ସ୍ଥିତି ସଂପର୍କରେ ଅବଗତ କରାଇଛନ୍ତି । ବିଜ୍ଞାନର ନିରସ ବିଚାର କାବ୍ୟିକ ସରସତାର ପ୍ରବାହ ଦେଇ ଅତି ଚମତ୍କାର ଭାବରେ ଅଭିବ୍ୟକ୍ତ ହୋଇଛି । ତାଙ୍କ ଶବ୍ଦରେ –''ଏ ପୃଥିବୀ ହିଁ ସକଳ ପ୍ରାଣୀଙ୍କର ମଧୁଚକ୍ର ଏବଂ ଭୂତସମୂହ ପୃଥିବୀର ମଧୁଚକ୍ର । ଏଥିରେ ଯେଉଁ ତେଜୋମୟ ଅମୃତମୟ ପୁରୁଷ ବିଦ୍ୟମାନ ଅଛନ୍ତି, ସେ ହିଁ ସର୍ବମୟ ବ୍ରହ୍ମ ଅଟନ୍ତି।'' ବିଜ୍ଞାନୀମାନେ ଏ ପୃଥିବୀକୁ ଛାଡ଼ି ଅନ୍ୟ ଗ୍ରହରେ ଯାଇ ବିଭିନ୍ନ ଅନୁସନ୍ଧାନ କରିଚାଲିଛନ୍ତି । କୋଟି କୋଟି ଆଲୋକବର୍ଷର ବିବର୍ତ୍ତନର ଧାରା ମଧ୍ୟ ଦେଇ ଏ ସୃଷ୍ଟି ସହସ୍ୟାବୃତ୍ତ । କିନ୍ତୁ ସମସ୍ତ ଗ୍ରହ–ଉପଗ୍ରହ ଅପେକ୍ଷା ପୃଥିବୀ' ଅନନ୍ତ ଐଶ୍ୱର୍ଯ୍ୟର ଅଧିକାରିଣୀ, ମମତା ସ୍ନିଗ୍ଧା, ଜୀବନ ରସରେ ପରିବର୍ଣ୍ଣା ତଥା ମଣିଷର ଉଷ୍ମତାରେ ସଂଜୀବିତ ବୋଲି ପ୍ରାବନ୍ଧିକଙ୍କ ମତ । ପୃଥିବୀର ବିକଳ୍ପ ନାହିଁ କି ବିଲୟ ନାହିଁ । ସେ ଚିର ଶାଶ୍ୱତ, ସ୍ଥିର ତେଣୁ ସମସ୍ତଙ୍କୁ ପୃଥିବୀ ବିଭୋର ହେବା ପାଇଁ ପ୍ରାବନ୍ଧିକ ଆହ୍ୱାନ କରିଛନ୍ତି ।

'ମଥୁରା ନଗରୀ' ରଚନାରେ 'ମଥୁରା' ଏକ ଅନ୍ଧାରୁଆ ଗିରିଗୁହାର ପ୍ରତୀକ । କାଳର ସଂଘାତରେ ନିଷ୍ଫଳ ଜୀବନକୁ ଆଉ ପାଦେ ଅନ୍ଧାରକୁ ଟାଣିନିଏ । ପ୍ରାବନ୍ଧିକଙ୍କ ମତରେ ମଥୁରା ଅପରିମେୟ ଭବିଷ୍ୟତର ପ୍ରଥମ ମୁହୂର୍ତ୍ତ .... ମଥୁରା ଶୋଷଣ କରେ ।'' ପ୍ରାବନ୍ଧିକ ମଥୁରା ନଗରୀକୁ ଶିଶୁହନ୍ତା, କ୍ଷୁଧାର୍ତ୍ତ କଣ୍ଟାବଣ ରୂପେ ନାମିତ କରିଛନ୍ତି । ମଥୁରାକୁ ପ୍ରତୀକାତ୍ମକ ଭାବେ ଗ୍ରହଣ କରି ପ୍ରାବନ୍ଧିକ ଶ୍ରୀ ରଥ ଏକ ଅପରିଚିତ ଅନାଗତର ରାଜ୍ୟ, ଅନ୍ଧାରୁଆ ଗିରିଗୁହା, କ୍ଷୁଧାର୍ତ୍ତ କଣ୍ଟାବଣ ରୂପେ ଅଭିହିତ କରିଛନ୍ତି, ଯେଉଁଠି ନାନାବିଧ କଳ୍ପିତ ବିପର୍ଯ୍ୟୟରେ ଆଶଙ୍କିତ ହୁଅନ୍ତି ଯଶୋଦା, ନନ୍ଦ ତଥା ଗୋପାଙ୍ଗନାଗଣ । ପରିଶେଷରେ ଗୋପ ଓ ମଥୁରା କେବଳ ମାତ୍ର ଦୁଇଟି ଘାଟ ରୂପେ ଆଖି ସମ୍ମୁଖରେ ଦିଶେ ଆଧୁନିକ ମାନବ ତା'ର ଜୀବନ ମୂଲ୍ୟକୁ ନେଇ ଏମିତି ଗୋପ ଓ ମଥୁରାର ଘାଟ ପାରିହୁଏ । କେବେକେବେ ଗୋପର ଆତ୍ମାକୁ ଧାରଣ କରି ରିକ୍ତ ହୋଇଯାଏ ତ ପୁଣି ମଥୁରାରେ ଗୋପର ଆତ୍ମାକୁ ଅନ୍ୱେଷା କରେ । କିନ୍ତୁ ବଞ୍ଚିବାର ସାର୍ଥକତା ଗୋପ ନୁହେଁ ଅବା ମଥୁରା ନୁହେଁ ବରଂ ଏକ ଦଶା, ଏକ ସ୍ଥିତି ଏବଂ ଏକ ପ୍ରବାହ ମାତ୍ର ।

ଫଗୁଣକୁ ଜଣେ ଦାର୍ଶନିକର ଦୃଷ୍ଟି ନେଇ ଶ୍ରୀ ରଥ ପରିଭାଷିତ କରିଛନ୍ତି । ଫଗୁଣ ଏକ କୁହୁକ । ନିତ୍ୟ ବର୍ତ୍ତମାନ ପ୍ରକ୍ରିୟା । ଯାହାକୁ ଶିଳ୍ପୀ ନିଜର ସୃଷ୍ଟିର ମଧୁସଂପଦ ଭାବରେ ଧାରଣ କରିଥାଏ । କାରଣ ''ସ୍ରଷ୍ଟାର ଗଭୀର ଗର୍ତ୍ତରେ ଅହରହ ମଳୟ ତା'ର ସୃଜନ– ମନ୍ତ୍ର ଗାଉଥାଏ ।'' ମାତ୍ର ସ୍ରଷ୍ଟା କେବଳ ଫଗୁଣର ମଧୁମୟ ରୂପକୁ ଅନ୍ୱେଷା କରିନଥାଏ, ତତ୍‌ସହିତ ସଂଲଗ୍ନ ଥାଏ ଫଗୁଣର ନିଦାରୁଣପଣ ଓ ତା'ର ଜ୍ୱାଳାର ଆକର୍ଷଣକୁ ମଧ୍ୟ ସ୍ୱାଗତ କରିଥାଏ । କାରଣ ନିଦାରୁଣ ଫଗୁଣ ଯନ୍ତ୍ରଣାଦଗ୍ଧ ସ୍ମୃତିମୁଖର ସ୍ଥିତିକୁ ସଦାସର୍ବଦା ଅନ୍ତର୍ଗର୍ଭିତ କରିଥାଏ । ଯାହାର ଚୁମ୍ବକୀୟ ସ୍ପର୍ଶମାତ୍ରେ ସ୍ରଷ୍ଟାର ଭାବପୂର୍ଣ୍ଣ ଆବେଗ ବର୍ଣ୍ଣବିଭାମଣ୍ଡିତ ହୋଇ ଗୁଞ୍ଜରି ଉଠେ । ସେହି ନିଦାରୁଣ ଫଗୁଣ ସ୍ରଷ୍ଟାର ସୃଷ୍ଟି ଉତ୍ସ ।

'କହିବାକୁ ଲାଜ' ନିବନ୍ଧରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ବିଶ୍ୱବନ୍ଦିତ ସଭା ରୂପେ ଶ୍ରୀ ରଥ ବର୍ଣ୍ଣନା କରିଛନ୍ତି । ଜଗନ୍ନାଥଙ୍କ ଭକ୍ତିରେ ଉଲ୍ଲସିତ ଭାବଗର୍ଭକ ଶବ୍ଦକୁ ପାଠ କରିବା ମାତ୍ରେ ହିଁ ପାଠକ ତାଙ୍କ ଅପୂର୍ବ ଯାଦୁକରୀ ଶବ୍ଦ ବିନ୍ୟାସକୁ ଅନୁଭବ କରିପାରିବ । ଶ୍ରୀ ରଥଙ୍କ ଶବ୍ଦରେ– ''କାଳିଆ କଟକଟ ଆଦିମ କାଳରାତ୍ରିର ରଙ୍ଗ ଉପରେ ଯୋଡ଼ାଏ 'ଠ' ମୁଣ୍ଡାଳି ବୁଲେଇ ଦିଆହୋଇଛି । ସେଇଟା ପୁଣି ଏକା ଥରକେ ସୂର୍ଯ୍ୟର ରଙ୍ଗ ।'' ପୁରୁଷାନୁକ୍ରମେ

ଉତ୍କଳ ଜାତିକୁ ବାହୁ ସଂପ୍ରସାରିତ କରିଛନ୍ତି ସେ । କିନ୍ତୁ ତାଙ୍କୁ ଈଶ୍ୱରୀୟ ସତ୍ତାଙ୍କୁ ନେଇ ସଂଶୟାଚ୍ଛନ୍ନ ମାନବ ଯଦି କେବେ ଲଜ୍ଜା ଅନୁଭବ କରେ ତେବେ ଉତ୍କଳୀୟ ଶିଳ୍ପୀଙ୍କ ଅଦ୍ୱିତୀୟ କଳା କର୍ମ ନିକଟରେ ମଥାନତ କରିବ ନିଶ୍ଚୟ । ଶିଳ୍ପୀର ଇନ୍ଦ୍ରିୟାଭାସର ଅପୂର୍ବ ରୂପକାନ୍ତି ନେଇ ଚକାଡ଼ୋଳା ଆଦି ବିଶ୍ୱ ଦରବାରରେ ରହସ୍ୟ ଓ ଦୁର୍ବୋଧପୂର୍ଣ୍ଣ ନିଶ୍ଚୟ ।

ବିବେକାନୁମୋଦିତ ଅନ୍ତଃସ୍ୱର ଶୁଣି କାର୍ଯ୍ୟରତ ରହବାକୁ ନିର୍ଦ୍ଦେଶ ଦେଇ ଶ୍ରୀ ରଥଙ୍କ 'ଶୁଣନ୍ତୁ' ନିବନ୍ଧଟି ଆଧୁନିକ ସମୟରେ ପ୍ରାସଙ୍ଗିକ । ଗହୀରର ସ୍ୱର ହିଁ ପ୍ରକୃତ ସ୍ୱର । ମାନବ ଜୀବନକୁ ବହୁତ କିଛି ବାହ୍ୟ ବତାସୀ ଆହ୍ୱାନ ସତତ ବାଧକରେ ଶୁଣିବାକୁ ଏବଂ ସେସବୁକୁ କାର୍ଯ୍ୟରେ, ମନରେ, ପ୍ରବୃତ୍ତିରେ ପରିଣତ କରିବାକୁ । କିନ୍ତୁ ପ୍ରାବନ୍ଧିକଙ୍କ ମତରେ ବିବିଧ କୋଳାହଳର ପଶ୍ଚାତ୍‌ରେ ଥିବା ଅନନ୍ତ କମ୍ପନକୁ ହୃଦ୍‌ବୋଧ କଲେ ହିଁ ମାନବ ଜୀବନ ସାର୍ଥକ ହୋଇଥାଏ । 'ଇତ୍ୟାଦି' ଓ 'ସଂଚୟର ପ୍ରତିପକ୍ଷ', ନିବନ୍ଧ ଦ୍ୱୟରେ ଶ୍ରୀ ରଥ ମାନବ ଜୀବନର ମନସ୍ତାତ୍ତ୍ୱିକ ଆକଳନ କରିଛନ୍ତି । 'ଛପେଇ ଆତଙ୍କ' ଏକ ମନୋରମ ରମ୍ୟ ରଚନା । ଛାପାଖାନାରେ ଅକ୍ଷର ଖଞ୍ଜା କାର୍ଯ୍ୟରେ ଦାୟିତ୍ୱରେ ଥିବା ବ୍ୟକ୍ତିବିଶେଷର ଅମନଯୋଗିତା ଓ ସ୍ୱଳ୍ପଜ୍ଞାନ ହେତୁ ନିର୍ଦ୍ଦିଷ୍ଟ ବର୍ଣ୍ଣ ବ୍ୟତୀତ ଅନ୍ୟ କୌଣସି ଭୁଲ ବର୍ଣ୍ଣର ପ୍ରୟୋଗ ଦ୍ୱାରା ଶବ୍ଦରୂପ ବଦଳିଯିବା ନିଶ୍ଚିତ ରୂପେ ବିଡ଼ମ୍ବନାର ବିଷୟ । ଏଥିପାଇଁ ଶ୍ରୀ ରଥ ଦାୟୀ କରିଛନ୍ତି ଓଡ଼ିଆ ଅକ୍ଷରର ଗୋଟାଳିଆ 'ଠ' ରୂପକୁ ।'ରଞ୍ଜନ' ଏବଂ ନବର ଶବ୍ଦ ନିଶ୍ଚିତ ସଂଶୟ ସୃଷ୍ଟିକାରୀ ଦୁଇଟି ଶବ୍ଦ । ଗୋଟିଏ ଆରଟି ପରି ମନେହୁଏ । ପ୍ରାବନ୍ଧିକଙ୍କ ମତରେ– ''ତିନୋଟି ଲଣ୍ଡା ମୋଟା ଲୋକଙ୍କୁ ଏକାଠି ଦେଖି ସେମାନଙ୍କୁ ବାରିବା ଯେପରି କଷ୍ଟକର, ସେପରି ତିନୋଟି ନିରାଭରଣ ଓଡ଼ିଆ ଅକ୍ଷର । ତେଣୁ, ମୁଦ୍ରଣଗତ ସଚେତନତା ଅତ୍ୟନ୍ତ ଜରୁରୀ । ସ୍ଥାନ ଅଦଳବଦଳ ଲେଖାକୁ ବିକୃତ କରିଦିଏ । ପ୍ରସଙ୍ଗାନୁକ୍ରମେ ଶ୍ରୀ ରଥ ଓଡ଼ିଆ ଅକ୍ଷରର 'ଠ' ରୂପ ଛପେଇ ଭୁଲ, ଦିଗ– ଭ୍ରମ, ଧାଡ଼ି ବଦଳ, ଚିହ୍ନ ଉଭାନ, ହରଣଚାଲ ପ୍ରକ୍ରିୟା, ସ୍ୱଚ୍ଛନ୍ଦ ସନ୍ତରଣ, ପେଟ ପିଠି ବିବାଦ, କାଲି ସହଯୋଗ ଭଳି ବହୁ ବିକୃତ ସ୍ଥିତି ହେତୁ ରଚନାଟିଏ ଛପେଇ ଆତଙ୍କର ଶିକାର ହେବା ଦୁର୍ଭାଗ୍ୟକୁ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି ।

'ବିଦ୍ୟା ଓ ବିଦ୍ୟାର୍ଥୀ' ଚନ୍ଦ୍ରଶେଖର ରଥଙ୍କର ଏକ ବହୁ ଚର୍ଚ୍ଚିତ ଉତ୍କୃଷ୍ଟ ପ୍ରବନ୍ଧ । ଏହା ମାନବ ଜୀବନର ଏକ ପ୍ରମୁଖ ଭୂମିକାର ମହତ୍ତ୍ୱକୁ ପ୍ରତିଷ୍ଠା କରେ । 'ବିଦ୍ୟା' ମଣିଷକୁ ପ୍ରକୃତ ଜୀବନ ମୂଲ୍ୟର ଦୀକ୍ଷା ପ୍ରଦାନ କରିଥାଏ । ଏହାକୁ ଏକ ଆୟାସଲଭ୍ୟ ଐଶ୍ୱର୍ଯ୍ୟ ରୂପେ ପ୍ରାବନ୍ଧିକ ଅଭିହିତ କରିଛନ୍ତି । ଜ୍ଞାନ ସାଗରର ଗଭୀରତମ ଗର୍ଭକୁ ବଜ୍ର ତୁଲ୍ୟ ଭେଦକରି ମେଧା ଲାଭ ଅତ୍ୟନ୍ତ କଷ୍ଟ ସାପେକ୍ଷ । ଏ କ୍ଷେତ୍ରରେ ବିଦ୍ୟା–ବିଦ୍ୟାର୍ଥୀ ଏବଂ ବିଦ୍ୟାୟତନ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । କିନ୍ତୁ ସଂପ୍ରତି ନୂତନ ଶିକ୍ଷାୟତନମାନଙ୍କରେ ବ୍ୟବସାୟିକ ମନୋବୃତ୍ତି ସହିତ ଅନିୟନ୍ତ୍ରିତ – ଅସଂଯତ ବିଦ୍ୟାର୍ଥୀର ଶିକ୍ଷା ତଥା ଶିକ୍ଷକମାନଙ୍କ ପ୍ରତି ଉଦାସୀନତା ବିଡ଼ମ୍ବନାର ବିଷୟ ନିଶ୍ଚିତ । ଶ୍ରୀ ରଥ ଏଭଳି ବିଦ୍ୟାର୍ଥୀମାନଙ୍କ ସଂପର୍କରେ ମତବ୍ୟକ୍ତ କରିଛନ୍ତି ଯେ– '' ପ୍ରାଜ୍ଞପୂଜା, ଶୁଚି, ବ୍ରହ୍ମଚର୍ଯ୍ୟ, ଅହିଂସାଦି ଶରୀର ତପସ୍ୟା ତ ଏହାଙ୍କର ନାହିଁ । ବାଙ୍ମୟୀ ଏବଂ ମାନସ ତପସ୍ୟା ପାଇଁ ଏମାନଙ୍କର ପ୍ରସ୍ତୁତି ବା ସାମର୍ଥ୍ୟ ନାହିଁ କି ଇଚ୍ଛା ମଧ୍ୟ ନାହିଁ।'''ଗୁରୁ' ଆସନ ଅଧିକାରୀମାନଙ୍କ ସଂପର୍କରେ ମଧ୍ୟ ପ୍ରାବନ୍ଧିକ ନିଜ ନିରପେକ୍ଷ ବିଚାରକୁ ଉପସ୍ଥାପନ କରିଛନ୍ତି । ଅର୍ଥ ଏବଂ କାମ ଜୀବନର ଲକ୍ଷ୍ୟ ନୁହେଁ ବରଂ ଶୃଙ୍ଖଳିତ ଜୀବନ, ଦେହାନ୍ତର– ମୁକ୍ତିର ସଂଯମିତ ଲକ୍ଷ୍ୟ ହିଁ ମାନବର ପ୍ରକୃତ ଲକ୍ଷ୍ୟ ହେବା ଉଚିତ । ଅଭ୍ୟାସ, ଅଧ୍ୟବସାୟ, ଏକାଗ୍ରତା ଓ ନିୟମଯୁକ୍ତ ବିଦ୍ୟାଭ୍ୟାସ ଦ୍ୱାରା ବିଦ୍ୟାର୍ଥୀ ତା'ର ବିଶାଳତମ ସିଦ୍ଧିପ୍ରାପ୍ତ ହୁଏ ।

ଶ୍ରମକାତର ଛାତ୍ର–ଛାତ୍ରୀମାନଙ୍କ ଦ୍ୱାରା କପି 'ଶଠତା' ଅବା ଚିତାକଟାର ପ୍ରକ୍ରିୟା ସଂପର୍କରେ ତୀର୍ଯ୍ୟକ୍ ବ୍ୟଙ୍ଗ ରହିଛି ପ୍ରାବନ୍ଧିକ ଶ୍ରୀ ରଥଙ୍କ 'କପି' ରମ୍ୟ ରଚନାରେ । ଅତି ଚଟୁଳ ଶବ୍ଦ ବିନ୍ୟାସ ମାଧ୍ୟମରେ କପି କରିବା ପ୍ରବୃତ୍ତିଟିକୁ ବ୍ୟଙ୍ଗ କରିବାକୁ ଯାଇ ସେ ଲେଖିଛନ୍ତି– ''ଅନୁକରଣ ଏକ ବିଦ୍ରୋହ, ନିଜକୁ ଉତ୍କ୍ରମଣ କରିଯିବାର

ଅଖଣ୍ଡ ପ୍ରୟାସ । ଏ ପ୍ରୟାସରେ ବିମୂଢ଼ତା, ତା'ର ଅସହାୟତା, ବ୍ୟର୍ଥ ବିଫଳତା ଦେଇ ଜଗତ ଜନେ ହସନ୍ତି।'' 'କପି' ଏକ ପ୍ରବୃତ୍ତି, ଯାହା ଆଜୀବନ ଜାରି ରହେ । କପି କରିବା ପଶ୍ଚାତ୍ ଭାଗରେ ଅନ୍ୟ ଜଣକର ଦୀର୍ଘ ତପସ୍ୟାର ଫଳକୁ ଅନାୟାସରେ ପାଇବାର ଯୋଜନାବଦ୍ଧ ପ୍ରୟାସକୁ ପ୍ରାବନ୍ଧିକ ଦୃଢ଼ ସମାଲୋଚନା କରିଛନ୍ତି । 'କପି' କରୁଥିବା ଶଠମାନଙ୍କୁ ଲେଖକ ଛଦ୍ମବେଶଧାରୀ ଗୌତମ, ଲାଙ୍ଗୁଡ଼ଧାରୀ ଲୋମଶ ହନୁ ମରାଳୀ ହେଟା ଲୋଭରେ ହିଙ୍ଗୁଳ ଲଗାଇ ଥିବା ବଳୀ, ମେଘମାୟା ସୃଷ୍ଟିକାରୀ ମହିମଣ୍ଡନାଙ୍କ ଛଇଛଟା ସୃଷ୍ଟିକାରୀ ମାନସିକତା ସହିତ ତୁଳନା କରିଛନ୍ତି । କାରଣ ପ୍ରତ୍ୟେକ ଶଠ ନିଜ କ୍ଷୁଦ୍ରତା ବିଷୟରେ ସଚେତନ ଥିବାରୁ ନିଜର ସମସ୍ତ ଅଭାବସତ୍ତ୍ୱେ ପ୍ରତିଷ୍ଠା ଲୋଭରୁ ନିଜକୁ ମୁକ୍ତି କରି ନପାରି ଏତାଦୃଶ ପ୍ରୟାସରେ ଆଜୀବନ ମାତିଥାନ୍ତି । ଅନୁକରଣ ପ୍ରବୃତ୍ତିକୁ ଏକ ସ୍ୱାଭାବିକ ଅଭ୍ୟାସ ଏବଂ ମାନବ ପ୍ରାଣର ବିଶୁଦ୍ଧତମ ଆକୃତି ମତବ୍ୟକ୍ତ କରିଛନ୍ତି । ଯେଉଁଥିପାଇଁ ପ୍ରାବନ୍ଧିକ ମା'ଟି ନିଜ ସନ୍ତାନର ଦରୋଟି ଶବ୍ଦଙ୍କୁ, ପ୍ରସ୍ଫୁଟିତ ପଦ୍ମ ଭଳି ହେବା ପାଇଁ ତପସ୍ୱୀର ଦର୍ଶନକୁ ସମ୍ମାନ ଜଣାଇଛନ୍ତି । ଜଣେ ସମୁଚ୍ଚ ଦର୍ଶନବାଦୀ ସ୍ରଷ୍ଟା ଭାବରେ ଶ୍ରୀ ରଥଙ୍କ ନମନୀୟ ଦୃଷ୍ଟିକୋଣ କେତେ ଯେ ମହାନ୍, ଏଥିରୁ ତାହା ହୃଦ୍ୟ ହୁଏ ।

ଶୁଭ୍ର ଶରତ, ଦିଅଁ ଦେଖା, 'ମୃତ୍ୟୁ – ଏକ ବିଳାସ' ବ୍ୟବଧାନ କାନ୍ଥରା, ଖୋଜିବା–ନ ପାଇବା, ଅନନ୍ୟ, କଥା ସରିଯାଏ ଇତ୍ୟାଦି ରମ୍ୟରଚନାଗୁଡ଼ିକର ଅନ୍ତର୍ନିହିତ ଭାବଧର୍ମ ପାଠକକୁ ଯେତିକି ଆତ୍ମମଗ୍ନ କରାଇବାରେ ସହାୟକ ହୁଏ ସେତିକି କାବ୍ୟିକ ରସାତଳ ଦ୍ୱାରା ତା'ର ପ୍ରାଣକୁ ଆହ୍ଲାଦିତ ମଧ୍ୟ କରିଥାଏ । ଶ୍ରୀ ରଥଙ୍କ ଦ୍ୱାରା ଲିଖିତ ଏ ସମସ୍ତ ରମ୍ୟରଚନାର କ୍ଷୁଦ୍ରରୂପ ଭିତରେ ଜୀବନବୋଧର ଅଖଣ୍ଡ ଅନ୍ତର୍ଦ୍ୟୋତନା ଅଦ୍ଭୁତ ରୂପେ ଆତ୍ମପ୍ରକାଶ ଲାଭ କରିଛି ।

ସାହାରା ରଚନାରେ ଶ୍ରୀ ରଥ ଏ ପୃଥିବୀକୁ ବର୍ତ୍ତୁଳ ଓଏସିସ୍ ରୂପେ ଅଭିହିତ କରିବା ସହିତ ଏହାର ମୋହାଚ୍ଛନ୍ନକାରୀ ବଳୟ ପ୍ରତି ସଚେତନ କରାଇଛନ୍ତି । ତାଙ୍କ ଶବ୍ଦରେ– ''ଏ ବିଚିତ୍ରବର୍ଣ୍ଣା ପୃଥିବୀଟି ଗୋଟିଏ ବର୍ତ୍ତୁଳ ଓଏସିସ୍ ।.... ଏଇଠି ଦହନ ସତ୍ୟ, ପୀଡ଼ନ ସତ୍ୟ, ବିସ୍ଫୋରଣର ଯନ୍ତ୍ରଣା, ତା'ର ଲେଲିହାନ୍ ଅଗ୍ନି ସତ୍ୟ ।'' ନିଷ୍କମ୍ପ ମାନବ ଜୀବନରେ 'ଆଶାରୂପୀ ସାହାରା', ଯେଉଁ କମ୍ପନ ସୃଷ୍ଟି କରେ, ତାହା ତାକୁ ବହୁ କ୍ରୋଶ ଅତିକ୍ରମ କରିବାକୁ ସକ୍ରିୟ –ଶକ୍ତି ପ୍ରଦାନ କରେ ଓ ତାକୁ ସ୍ୱପ୍ନାଚ୍ଛନ୍ନ କରେ । ଯଦିଚମାନଙ୍କ ପାଇଁ ଅଜସ୍ର ବାଲି ହିଁ ସତ୍ୟ । ତଥାପି ସାହାରା ଏକ ମାୟାଞ୍ଜନ, ଏହି ଅନନ୍ତ ଯୁଗଚକ୍ରର ବର୍ମ୍ ।

ଅପାଆନ୍ତା, ଦୂରନ୍ତ ଜିନିଷ ପ୍ରତି ମନୁଷ୍ୟର ଥାଏ ଅସୀମ ଆକର୍ଷଣ ।'ଦୂର ପାହାଡ଼ ସୁନ୍ଦର' ନ୍ୟାୟରେ ଦୀର୍ଘ – ଦୁସ୍ତର ବ୍ୟବଧାନ ମଣିଷ ଭିତରେ ସେପାରିର ସ୍ଥିତି ପ୍ରତି ଦୁର୍ବାର ଆକର୍ଷଣ ସୃଷ୍ଟି କରିଥାଏ ।କାରଣ 'ସେପାରି' ସର୍ବଦା ମୁଗ୍ଧ ଏବଂ ଦଗ୍ଧ କରେ । ତାହା ସ୍ୱପ୍ନ ଏବଂ ଯାତନାର ଚିର ଅପ୍ରତ୍ୟକ୍ଷ ରାଜ୍ୟ । 'ସେପାରି' ରମ୍ୟ ରଚନାରେ ଅପ୍ରାପ୍ତ ଚିଜ ପ୍ରତି ଅହେତୁକ ଆକର୍ଷଣ ମନସ୍ତାତ୍ତ୍ୱିକ ବର୍ଣ୍ଣନା ରହିଛି ଏହି ରଚନାରେ । ଶ୍ରୀ ରଥଙ୍କ ଅଭିବ୍ୟକ୍ତି ଠିକ୍ କବି ଭଳି ସ୍ୱତଃସ୍ଫୂର୍ତ୍ତ ମନେହୁଏ । 'ସେପାରି'ର ମହତ୍ତ୍ୱ ବୁଝାଇବାକୁ ଯାଇ ଶ୍ରୀ ରଥ ଲେଖିଛନ୍ତି– ''ସେପାରିରେ ସବୁ ସୁନ୍ଦର । ସେଠି ସତେ ବା ଗୋଟିଏ ପ୍ରଚ୍ଛନ୍ନ ପରକ୍ରିୟାର ଦୁର୍ବାର ଆକର୍ଷଣ । ଏପାରି ପାହାଡ଼ କେବଳ କଣ୍ଟାବୁଦା ଏବଂ କଙ୍କରର ସ୍ତୁପ । ଏପାରି ନଈ ଧାରରେ ଅନେକ କର୍ଦ୍ଦମ । ଏପାରି ଗଛଗୁଡ଼ିକ ଗଣ୍ଠିଆ, ରୁଢ଼ିଆ, ନିଷ୍ଫଳ ବନସ୍ପତି । ସେ ପାରିର ଡ଼ାଳେ ଡ଼ାଳେ କିନ୍ତୁ କଦମ୍ବ ଧାରେ ଧାରେ ଯମୁନା । ପାହାଡ଼ଗୁଡ଼ିକ ଶ୍ୟାମଳ ସୁନ୍ଦର । ସେପାରିର ଅଖଣ୍ଡ କୁଞ୍ଜବନରେ ଅହରହ ବଂଶୀ ଡ଼ାକୁଥାଏ । ଏପାରିରୁ ବିମୁଖ ହୋଇ ଆମେ ସେପାରିକୁ ଅଭିସାର ରଚିବାକୁ ଉତଲା ହୋଇଉଠୁ । 'ସେପାରିକୁ ପ୍ରେମ ଓ ବିରହର, ସ୍ୱପ୍ନ ଓ ଯାତନାର ଚିର ଅପ୍ରତ୍ୟକ୍ଷ ରାଜ୍ୟ ରୂପେ ଲେଖକ ଅଭିହିତ କରିଛନ୍ତି ।

ଶ୍ରୀ ରଥଙ୍କ 'ଏ ଯେଉଁ ପୃଥିବୀ' ସଂକଳନସ୍ଥ ୨୦ ଗୋଟି କ୍ଷୁଦ୍ର ରଚନାରେ ଭିତରେ ରହିଛି ଅଖଣ୍ଡ ରମ୍ୟ ଅନ୍ତର୍ଦ୍ୟୋତନା, ଯାହା ତାଙ୍କ ଚିଦ୍‌ବିସ୍ତାରକୁ ସିଦ୍ଧ କରିଛି ।

ଅତି ସାବଲୀଳ ଢ଼ଙ୍ଗରେ ସରଳ– ତରଳ ଶବ୍ଦ ବିନ୍ୟାସ ପାଠକ ହୃଦୟରେ ଗୀତିମୟ– ଛଳଛଳ ଆବେଗ ପ୍ରବଣତା ସୃଷ୍ଟି କରିଥାଏ । ଶ୍ରୀ ରଥ ତାଙ୍କ ରଚନାଶୈଳୀ ସଂପର୍କରେ ଉଲ୍ଲେଖ କରିଛନ୍ତି ଯେ–'' କବିତା ଯେମିତି ଗଦ୍ୟାରୂଢ଼ ହେବାର ଦେଖାଯାଏ, ଗଦ୍ୟ ମଧ୍ୟ ସେହିଭଳି କବିତାକ୍ରାନ୍ତ ହେବାର ଦେଖାଯାଏ । ମଝିରେ ପାଣିଗାରଟିକୁ କେବଳ ଡ଼େଇଁଯିବା କଥା, ଗୋଟିଏ ଦିଗରେ ହୁଏତ ମନ୍ତ୍ରପୂତ ବିଶୁଦ୍ଧ କବିତା, ତରଳ, ମୃଦୁଳ, ସୂକ୍ଷ୍ମ ଏବଂ ଅନ୍ୟ ଦିଗରେ ଚାରିକୋଣିଆ ନିବିଡ ଗଦ୍ୟ । ଏ ଦୁଇଟି ଦୂରତମ ବିନ୍ଦୁ ମଧ୍ୟରେ ଅନେକ ପ୍ରଶସ୍ତ ସାଧାରଣ ଭୂମି । ସେଇଠି ରଚନା ଲେଖାହୁଏ । ଆଉ ଧାରେ ଘୁଞ୍ଚିଗଲେ ଯାହା ତରଳି ଯାଇ କବିତା ହୋଇଯାଆନ୍ତି । ତାହାହିଁ ରଚନା'' ଯେଉଁଠି କବିତା ଛନ୍ଦ ବଦଳାଇ ମଞ୍ଚର ହୋଇଯାଏ, ତାହାହିଁ ରଚନା । ଏହା କିନ୍ତୁ ଗଦ୍ୟପଦ୍ୟର ଅପମିଶ୍ରିତ ନୁହେଁ ।''– ପ୍ରାବନ୍ଧିକଙ୍କ ସମଗ୍ର ରଚନାରେ ଦର୍ଶନର ସୂକ୍ଷ୍ମ ମୂଲ୍ୟ ନିହିତ ଅଛି । ଗଭୀର ଦର୍ଶନ ତଥା କାବ୍ୟିକତାର ଅଦ୍ଭୁତ ଫ୍ୟୁଜନ୍ ପାଠକକୁ ଆତ୍ମହରା କରିବାରେ ସମର୍ଥ । T.S. Eliotଙ୍କ ଉକ୍ତି – "The Author is larger than his work "– ଶ୍ରୀ ଚନ୍ଦ୍ରଶେଖର ରଥଙ୍କ ଭଳି ମନୀଷୀଙ୍କ ନିମନ୍ତେ ପ୍ରଣିଧାନଯୋଗ୍ୟ । ରଚନାଗୁଡ଼ିକରେ ବର୍ତ୍ତୁଳା ପୃଥିବୀ, ସ୍ତମ୍ଭିତ ଚିତ୍ରପଟ, ଚଇତର ଧୂଳି, ଚିକ୍କଣ ମୁଗୁନି ଘନକୃଷ୍ଣ ମୃତ୍ୟୁ ବଳୟ, କୂର୍ମର ଅବୟବ, ସାନ୍ଦ୍ର ବୈତରଣୀ, ବରଫ କୁହୁଡ଼ି, କୁଢ଼ କୁଢ଼ ବ୍ୟର୍ଥତା, କ୍ଳାନ୍ତ ଝଡ଼ର ଡ଼େଣା ଇତ୍ୟାଦି ଚିତ୍ରାତ୍ମକ ଶବ୍ଦ ତାଙ୍କ ରଚନାର ଅଙ୍ଗକୁ ଉତ୍କର୍ଷରେ ପରିପୂର୍ଣ୍ଣ କରିଛି । ତାଙ୍କ ନିବନ୍ଧର ଶବ୍ଦଗୁଡ଼ିକ ତାଙ୍କ ମହତ୍ତର ଧୀଷଣା ଶକ୍ତିର ପରିଚାୟକ ହୋଇଛି । ଶ୍ରୀ ରଥଙ୍କର ପ୍ରତି ବାକ୍ୟ ବାଣୀତୁଲ୍ୟ ସ୍ମର୍ତ୍ତବ୍ୟ । ପ୍ରତ୍ୟେକଟି ସୃଷ୍ଟି ଭିତରେ ମାନବ ପ୍ରତି ଅନନ୍ତ ଭଲ ପାଇବାର ସ୍ପର୍ଶ ତାଙ୍କୁ ଯୁଗ ଯୁଗ ଧରି ପ୍ରାସଙ୍ଗିକ କରି ରଖିବ ନିଶ୍ଚୟ । ପ୍ରକୃତ ଜ୍ଞାନବେତ୍ତା ଭାବରେ ତାଙ୍କ ବୌଦ୍ଧିକତା ଦ୍ୱାରା ସେ ପାଠକ ହୃଦୟକୁ ଆଲୋକିତ କରିପାରିଛନ୍ତି । ଜାଗତିକ ଜୀବନ ଜିଜ୍ଞାସା ଦେଇ ସୂକ୍ଷ୍ମ ଦର୍ଶନବୋଧକୁ ତାଙ୍କ ଚେତନା ପ୍ରତିଷ୍ଠା କରିଥିବାରୁ ସେ ଜଣେ ବୋଧିବାଦୀରୂପେ ସଦା ସ୍ମରଣୀୟ ରହିବେ ।

**ପାଦଟୀକା**

୧– ରଥ ଶଶିଭୂଷଣ –(ସଂକଳନ ଓ ସଂପାଦନା)– ଚେତନାର ଚିତ୍ରକର ଚନ୍ଦ୍ରଶେଖର– ପ୍ରକାଶକ– ଚନ୍ଦ୍ରଶେଖର ସ୍ମୃତି ପରିଷଦ– ଭୁବନେଶ୍ୱର – ପ୍ରଥମ ସଂସ୍କରଣ– ୨୦୧୮–୧୯–ପୃ: ୧୧୭

୨– ରଥ ଶଶିଭୂଷଣ –(ସଂକଳନ ଓ ସଂପାଦନା)– ଚେତନାର ଚିତ୍ରକର ଚନ୍ଦ୍ରଶେଖର– ପ୍ରକାଶକ – ଚନ୍ଦ୍ରଶେଖର ସ୍ମୃତି ପରିଷଦ – ଭୁବନେଶ୍ୱର – ପ୍ରଥମ ସଂସ୍କରଣ– ୨୦୧୮–୧୯–ପୃ:୧୧୮

୩– ''–''–– ପୃ:୧୪୫

୪– ରଥ ଚନ୍ଦ୍ରଶେଖର

୫– ରଥ ଶଶିଭୂଷଣ (ସଂକଳନ ଓ ସଂପାଦନା) – ଚେତନାର ଚିତ୍ରକର ଚନ୍ଦ୍ରଶେଖର– ପ୍ରକାଶକ – ଚନ୍ଦ୍ରଶେଖର ସ୍ମୃତି ପରିଷଦ –ଭୁବନେଶ୍ୱର– ପ୍ରଥମ ସଂସ୍କରଣ– ୨୦୧୮–୧୯–ପୃ:୧୫୪

୬– ରଥ ଚନ୍ଦ୍ରଶେଖର – ନିବନ୍ଧ ସଂଗ୍ରହ – ପ୍ରକାଶକ – ବିଜୟ କୁମାର ମହାପାତ୍ର – ପ୍ରଜ୍ଞାଳୟ, ଦଣ୍ଡତୋଟା, ପୁରୀ–୧, ପ୍ରଥମ ସଂସ୍କରଣ – ୨୦୧୨– ପ୍ରଥମ ପୃଷ୍ଠା ।

୭–ରଥ ଚନ୍ଦ୍ରଶେଖର – ନିବନ୍ଧ ସଂଗ୍ରହ – ପ୍ରକାଶକ – ବିଜୟ କୁମାର ମହାପାତ୍ର – ପ୍ରଜ୍ଞାଳୟ, ଦଣ୍ଡତୋଟା, ପୁରୀ–୧, ପ୍ରଥମ ସଂସ୍କରଣ –୨୦୧୨– ପ୍ରଥମ ପୃଷ୍ଠା ।

୮. ରଥ ଚନ୍ଦ୍ରଶେଖର – ନିବନ୍ଧ ସଂଗ୍ରହ – ପ୍ରକାଶକ – ବିଜୟ କୁମାର ମହାପାତ୍ର – ପ୍ରଜ୍ଞାଳୟ, ଦଣ୍ଡତୋଟା, ପୁରୀ–୧, ପ୍ରଥମ ସଂସ୍କରଣ –୨୦୧୨– ପୃଷ୍ଠା–୧୪ ।

୯. ରଥ ଚନ୍ଦ୍ରଶେଖର – ନିବନ୍ଧ ସଂଗ୍ରହ – ପ୍ରକାଶକ – ବିଜୟ କୁମାର ମହାପାତ୍ର – ପ୍ରଜ୍ଞାଳୟ, ଦଣ୍ଡତୋଟା, ପୁରୀ–୧, ପ୍ରଥମ ସଂସ୍କରଣ–୨୦୧୨– ପ୍ରଥମ ପୃଷ୍ଠା – ପୃ: ୧୯

୧୦. ରଥ ଚନ୍ଦ୍ରଶେଖର – ନିବନ୍ଧ ସଂଗ୍ରହ – ପ୍ରକାଶକ – ବିଜୟ କୁମାର ମହାପାତ୍ର – ପ୍ରଜ୍ଞାଳୟ, ଦଣ୍ଡତୋଟା, ପୁରୀ–୧, ପ୍ରଥମ ସଂସ୍କରଣ –୨୦୧୨– ପ୍ରଥମ ପୃଷ୍ଠା – ପୃ: ୨୨

୧୧. ରଥ ଚନ୍ଦ୍ରଶେଖର – ନିବନ୍ଧ ସଂଗ୍ରହ – ପ୍ରକାଶକ – ବିଜୟ କୁମାର ମହାପାତ୍ର – ପ୍ରଜ୍ଞାଳୟ, ଦଣ୍ଡତୋଟା, ପୁରୀ–୧, ପ୍ରଥମ ସଂସ୍କରଣ –୨୦୧୨– ପ୍ରଥମପୃଷ୍ଠା –ପୃ: ୨୬

୧୧. ରଥ ଚନ୍ଦ୍ରଶେଖର – ନିବନ୍ଧ ସଂଗ୍ରହ – ପ୍ରକାଶକ – ବିଜୟ କୁମାର ମହାପାତ୍ର – ପ୍ରଜ୍ଞାଳୟ, ଦଣ୍ଡତୋଟା, ପୁରୀ–୧, ପ୍ରଥମ ସଂସ୍କରଣ–୨୦୧୨– ପ୍ରଥମ ପୃଷ୍ଠା –ପୃ: ୪୭

୧୨. ରଥ ଚନ୍ଦ୍ରଶେଖର – ନିବନ୍ଧ ସଂଗ୍ରହ – ପ୍ରକାଶକ – ବିଜୟ କୁମାର ମହାପାତ୍ର – ପ୍ରଜ୍ଞାଳୟ, ଦଣ୍ଡତୋଟା, ପୁରୀ–୧, ପ୍ରଥମ ସଂସ୍କରଣ–୨୦୧୨– ପ୍ରଥମ ପୃଷ୍ଠା– ପୃ: ୫୩

୧୩. ରଥ ଶଶିଭୂଷଣ –(ସଂକଳନ ଓ ସଂପାଦନା)– ଚେତନାର ଚିତ୍ରକର ଚନ୍ଦ୍ରଶେଖର– ପ୍ରକାଶକ– ଚନ୍ଦ୍ରଶେଖର ସ୍ମୃତି ପରିଷଦ – ଭୁବନେଶ୍ୱର – ପ୍ରଥମ ସସ୍କରଣ– ୨୦୧୮– ପୃ: ୫୯

୧୪. ରଥ ଚନ୍ଦ୍ରଶେଖର – ନିବନ୍ଧ ସଂଗ୍ରହ – ପ୍ରକାଶକ – ବିଜୟ କୁମାର ମହାପାତ୍ର – ପ୍ରଜ୍ଞାଳୟ, ଦଣ୍ଡତୋଟା, ପୁରୀ–୧, ପ୍ରଥମ ସଂସ୍କରଣ–୨୦୧୨– ପ୍ରଥମ ପୃଷ୍ଠା– ପୃ: ୧୦୩

୧୫. ରଥ ଚନ୍ଦ୍ରଶେଖର – ନିବନ୍ଧ ସଂଗ୍ରହ – ପ୍ରକାଶକ – ବିଜୟ କୁମାର ମହାପାତ୍ର – ପ୍ରଜ୍ଞାଳୟ, ଦଣ୍ଡତୋଟା, ପୁରୀ–୧, ପ୍ରଥମ ସଂସ୍କରଣ–୨୦୧୨– ପ୍ରଥମ ପୃଷ୍ଠା – ପ୍ରଥମ ପୃଷ୍ଠା

୧୬. ରଥ ଚନ୍ଦ୍ରଶେଖର – ନିବନ୍ଧ ସଂଗ୍ରହ – ପ୍ରକାଶକ – ବିଜୟ କୁମାର ମହାପାତ୍ର – ପ୍ରଜ୍ଞାଳୟ, ଦଣ୍ଡତୋଟା, ପୁରୀ–୧, ପ୍ରଥମ ସଂସ୍କରଣ–୨୦୧୨– ପ୍ରଥମ ପୃଷ୍ଠା –ପୃ: ୧୦୬

୧୭. ରଥ ଚନ୍ଦ୍ରଶେଖର – ନିବନ୍ଧ ସଂଗ୍ରହ – ପ୍ରକାଶକ – ବିଜୟ କୁମାର ମହାପାତ୍ର – ପ୍ରଜ୍ଞାଳୟ, ଦଣ୍ଡତୋଟା, ପୁରୀ–୧, ପ୍ରଥମ ସଂସ୍କରଣ –୨୦୧୨– ପ୍ରଥମ ପୃଷ୍ଠା

---

ସହକାରୀ ଅଧ୍ୟାପିକା, ଓଡ଼ିଆ ବିଭାଗ
ରମାଦେବୀ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର



# କପିଳେନ୍ଦ୍ର ଦେବଙ୍କ ଶେଷ ଦକ୍ଷିଣ ଗସ୍ତ

ଇନ୍ଦ୍ରମଣି ଜେନା
ବିଜୟିନୀ ମହାନ୍ତି

ଜୀବନବ୍ୟାପୀ ଦିଗ୍‌ବିଜୟ କରି ଓଡିଶାର ଆୟତନ ଅନ୍ତତଃ ତିନିଗୁଣ କରିବା ପରେ, ଜୀବନର ସାୟାହ୍ନରେ ଗଜପତି କପିଳେନ୍ଦ୍ର ଏକ ପାରିବାରିକ ତଥା ବ୍ୟକ୍ତିଗତ ସମସ୍ୟାରେ ଜ୍ୟେଷ୍ଠ ପରିବର୍ତ୍ତେ କନିଷ୍ଠ ରାଜପୁତ୍ରଙ୍କୁ ରାଜଗାଦି ଅର୍ପଣ କରିବା ସମ୍ବନ୍ଧରେ ଏବଂ ଏହା ଜଗନ୍ନାଥଙ୍କ ସ୍ୱପ୍ନବାଂଛା ଭାବରେ ବ୍ୟକ୍ତ କରିବାରେ ତଦାନୀନ୍ତନ ଓଡିଶା ସ୍ତବ୍ଧ ହୋଇଗଲା । ଯେଉଁ ଗଜପତି ଜଗନ୍ନାଥଙ୍କର କପିଳ

> କୃତିତ୍ୱ ହାସଲ କରି ମୋର ମଥା ଯେତିକି ଉଚ୍ଚ ହୋଇଛି, ସବୁଠାରୁ ଆଦର୍ଶ ହୋଇଛି ମୋତେ ନିଜକୁ ପୁରୁଷୋତ୍ତମଙ୍କର ରାଉତ ବା ସେବକ ଭାବରେ ପ୍ରତିଷ୍ଠିତ କରି ।

ରାଉତ, ଯେଉଁ ଗଜପତି ଓଡିଶା ମାଆର ବିଶିଷ୍ଟ ସନ୍ତାନ, ଯେଉଁ ଗଜପତି ଓଡିଆ ଭାଷା ଆଉ ସଂସ୍କୃତିର ତତ୍ତ୍ୱାବଧାରକ, ସିଏ ପୁଣି ସାଧାରଣ ନ୍ୟାୟର ବ୍ୟତିକ୍ରମ କରିବେ, ନିଜ ମନ ଆନ୍ଦୋଳିତ ହେଲା । ବୃଦ୍ଧ ବୟସରେ ପାରିବାରିକ ସମସ୍ୟାରେ ଜଡିତ ହୋଇ ବାରବାଟୀ ଛାଡି ଦକ୍ଷିଣ ସୀମା କୃଷ୍ଣାନଦୀ କୂଳକୁ ଗମନ କଲେ ।

**ମୋର ନିଷ୍ପତ୍ତିକୁ ଜଗନ୍ନାଥ ସାହା ହେଲେନି!**

ଏହାର ପ୍ରଥମ ସ୍ତାବକ ମୋର ଜ୍ୟେଷ୍ଠପୁତ୍ର ହାମଭୀରା ହିଁ ଘୋଷଣା ଶୁଣିବା ପୂର୍ବରୁ ରାଜପ୍ରାସାଦ ପରିତ୍ୟାଗ କରିଦେଲା । ପାଟରାଣୀ ମୂର୍ଚ୍ଛା ଗଲେ । ଏହି



ଦୁଃଖରୁ ସମଗ୍ର ଓଡିଶା ମୋତେ ପଚାରୁଛି । ପ୍ରକାଶ୍ୟରେ ମୁହଁ ନ ଖୋଲିଲେ ବି ମୋତେ ଲାଗେ ଯେପରି ଓଡିଶାବାସୀ ମୋତେ ଜବାବ ମାଗନ୍ତି, କାହା ବୁଦ୍ଧିରେ ମୁଁ ପୁରୁଷୋତ୍ତମକୁ ରାଜଗାଦି ସମର୍ପଣ କରୁଛି । ବଡପୁଅ ଥାଉ ଥାଉ ସାନପୁଅକୁ! ଜଗନ୍ନାଥ ପରା କହିଛନ୍ତି, ସପନାଇଛନ୍ତି !

ରାଜ୍ୟ ଓ ପରିବାର ପାଇଁ ଜୀବନର ସମସ୍ତ ଅସମ୍ଭବ କୃତିତ୍ୱ ହାସଲ କରି ମୋର ମଥା ଯେତିକି ଉଚ୍ଚ ହୋଇଛି,

ସବୁଠାରୁ ଆଦର୍ଶ ହୋଇଛି ମୋତେ ନିଜକୁ ପୁରୁଷୋତ୍ତମଙ୍କର ରାଉତ ବା ସେବକ ଭାବରେ ପ୍ରତିଷ୍ଠିତ କରି । ଧନଧାନ୍ୟ, ବିଜିତ ସମ୍ପଦ ଭଗବାନ ପୁରୁଷୋତ୍ତମଙ୍କ ପାଇଁ ପ୍ରଦାନ ଗୁରୁତ୍ୱର ପ୍ରଶ୍ନ ବହନ କରେନି, କିନ୍ତୁ ଆଦର୍ଶ ପ୍ରତିପାଦନ କରିବାରେ ପ୍ରଭୁଙ୍କ ସମ୍ମତି କାହିଁକି ଲୋକମାନେ ଗ୍ରହଣ କରନ୍ତିନି ?

ମୋର ପୁରୁଷୋତ୍ତମଦେବଙ୍କୁ ଉତ୍ତରାଧିକାରୀ ବାଛିବାରେ ଭ୍ରମ ହୋଇଗଲା କି ? ମୁଁ କଅଣ ଅନ୍ଧ ହୋଇଗଲି ଜ୍ୟେଷ୍ଠପୁତ୍ର ହାମଭୀରାଦେବ ପ୍ରତି ?

କାହିଁକି ଗଜପତି ରାଜ୍ୟରେ ଏ ବିଶୃଙ୍ଖଳା ? ପୁରୁଷୋତ୍ତମଦେବ ହାମଭୀରାଦେବଙ୍କଠାରୁ ବଡ ଜଗନ୍ନାଥ ଭକ୍ତ । ପୁରୁଷୋତ୍ତମଦେବ ଧୀର, ଶାନ୍ତ, ଧୀମନ୍ତ ଆଉ ଆଦର୍ଶବାନ । ମୁଁ ଏହି କାରଣରୁ ପୁରୁଷୋତ୍ତମଦେବକୁ ଆପଣଙ୍କର ରାଉତ ହେବାର ସୌଭାଗ୍ୟ ଦେବାକୁ ଇଚ୍ଛୁକ । ଏଥିରେ ସମସ୍ତେ କ୍ଷୁବ୍ଧ ହେବାର କାରଣ କଅଣ ଅଛି ?

ଜଗନ୍ନାଥଙ୍କର ଆଶୀର୍ବାଦ ରହିଛି ଓଡିଶା ପାଇଁ । ରାଜ୍ୟଟି ପ୍ରାକୃତିକ ପ୍ରତିବନ୍ଧକରେ ଭରା ବାହାର ଶତ୍ରୁମାନଙ୍କ ପାଇଁ । ପାହାଡ, ଜଙ୍ଗଲ ଭରା ଏହାର ସ୍ଥଳସୀମା । ଅବଶିଷ୍ଟ ମହୋଦଧି ।

ଅଦ୍ୟାବଧି ୩୨ ବର୍ଷ ଭିତରେ ହାମଭୀରାଦେବ କଅଣ ଗଜପତିତ୍ୱର ସ୍ୱାଦ ଚାଖିନି ? କୁମାର କପିଳେଶ୍ୱରଦେବ, ହାମଭୀରାଦେବର ପୁତ୍ର । ସିଏ କଅଣ କୋଣ୍ଡାଭିଡୁ ପରି ବିଶାଳ ଗଡର ପରିଚ୍ଛା ହୋଇନି ? ମାତ୍ର ସବୁ ସାଧନା ପରେ ଓଡିଶା ଶାସନ, ଓଡିଆ ପ୍ରସାର, ଜଗନ୍ନାଥ ଧର୍ମର ବିସ୍ତୃତି ପାଇଁ ମୋର ପୁରୁଷୋତ୍ତମ ଦେବକୁ ସ୍ୱୀକୃତି କଅଣ ଗୋଟିଏ ପକ୍ଷପାତୀ ପ୍ରୟାସ?

କିନ୍ତୁ ନ୍ୟାୟରୁ ବଞ୍ଚିତ ହୋଇଛି ମୁଁ ଜଗନ୍ନାଥ । ମୋର ଘର ଭିତରର ସମସ୍ୟା ଯାହା ମୋ ପାଇଁ ଆତ୍ମଘାତୀ ବ୍ୟବସ୍ଥା ହୋଇଛି ।

ମୋର ସବୁଠାରୁ ଦୁର୍ବଳତା – ନିଜର ମାତୃଭୂମିର ଆୟତନ ଆଉ ମୁଁ ସୂଚ୍ୟଗ୍ର ମେଦିନୀ ପଡୋଶୀ ରାଜ୍ୟରେ ମିଳେଇ ଯିବାକୁ ଦେଇନି କି ଦେବିନି!

ଆଜିଠାରୁ ହାମଭୀରା ବାରବାଟୀରୁ ଅନ୍ତର୍ଦ୍ଧାନ ହୋଇଯାଇଛି । ମନରେ ମୋର ଘୋର ସନ୍ଦେହ, ସିଏ ଦାକ୍ଷିଣାତ୍ୟର ବାଦ୍‌ଶାହ – ରେଡି ହୁଅନ୍ତୁ କି ବାହାମନି, ଉଦୟଗିରି ହେଉ କି ବିଜୟନଗର, ସବୁଠାରେ ତାର କର୍ତ୍ତୃତ୍ୱ ରହିଛି । ଆଜିର ଓଡିଶା ସାମ୍ରାଜ୍ୟ ଦାକ୍ଷିଣାତ୍ୟର ଭାରସାମ୍ୟରେ ଦଣ୍ଡାୟମାନ । ଟିକିଏ ଠେକ ହୁଗୁଳିଗଲେ, ଆଖିପିଛୁଳାକେ ଧରାଶାୟୀ ହେବ । ମୋର ସାରା ଜୀବନର ଅଧ୍ୟବସାୟ ପାଣିରେ ପଡିଯିବ ।

ପୁଣି କେତେଜଣ ଯେ ଓଡିଆ ପରିଚ୍ଛା ପ୍ରଶାସକ । ଓଡିଆ ପ୍ରଶାସନିକ କ୍ଷମତା ଗଜପତି ଚାହିଁଥିବାତକ । ମୁଣ୍ଡ ବୁଲାଇଲେ ଯେମିତି ଗଙ୍ଗରାଜାମାନଙ୍କ ଅମଳରେ ଅର୍ଥ ପ୍ରତିବଦଳରେ ସେନାପତିମାନେ ବି ଯୁଦ୍ଧ ନକରି ମୁହଁ ବୁଲାଇ ଫେରି ଆସିବାର ଉଦାହରଣ ରହିଛି । ଓଡିଆ ପାଇକମାନେ ଜୀବନ ମୂର୍ଚ୍ଛି ଜିତାପଟ ହୁଅନ୍ତି । କିନ୍ତୁ ସେମାନଙ୍କୁ ଯୁଦ୍ଧ କରିବାର ସରଞ୍ଜାମ ଓ ବୀରବାଜା ଦେଲେ ସିନା ହେବ । ଏତିକି କରିବାକୁ ଅନ୍ତତଃ ମୋ ଗାଦିଲାଭର ଦଶ ବର୍ଷ କଟିଗଲା । ଉତ୍କଳ ରାଜ୍ୟର ସମତଳ ଅଂଚଳର ଅନତି ଦୂରରେ ରହିଥିବା ପର୍ବତଗୁଡିକର ପାଦଦେଶ ଗାଁଗୁଡିକରେ କାଳ କାଳର ଯୋଦ୍ଧାକୁଳଗୁଡିକ ଜନ୍ମ ନିଅନ୍ତି । ହୋଇପାରେ ମହାଭାରତ କି କଳିଙ୍ଗ ଯୁଦ୍ଧ ଅବା କୁମରୀଗିରି ଅଇର ରାଜାଙ୍କ କଳିଙ୍ଗାଧିପତିଙ୍କର ଦୁର୍ଦ୍ଧର୍ଷ କଳିଙ୍ଗସେନା । ସମସ୍ତେ ଏହି ବୀରଭୂମିର ସନ୍ତାନ ।

ଏମାନଙ୍କର ମଥା ଅବନତ ହୋଇଯାଏ ଦେଶମାତୃକାକୁ ରକ୍ଷା କରିବାକୁ । କେବଳ ଏହି ବଳବାନ କଳିଙ୍ଗ ସିଂହମାନଙ୍କୁ ଏକତ୍ରିତ କରି ଶତ୍ରୁ ସାମନାରେ ଠିଆ କରିଦେଲେ, ହେଲା । ଏମିତି କରାଇପାରିଥିଲେ ଗଙ୍ଗ ଚୋଳଗଙ୍ଗ । ତିନି ପୁରୁଷ ଲାଙ୍ଗୁଳାଙ୍କ ପାଖ ପର୍ଯ୍ୟନ୍ତ ଗଲା ।

ତା’ ପରେ ବୀରବାଜା ଅଭାବରୁ ନେତୃତ୍ୱର ଅବହେଳାରୁ ବୀରତ୍ୱର ପାହି ଖସିଗଲା । ଲାଙ୍ଗୁଳା ନରସିଂହଙ୍କ ବାହିନୀପତି ଉପାଧି କେତେ ଉତ୍ସାହିତ କରୁଥିଲା କ୍ଷତ୍ରିୟ ଆଉ ଅଣକ୍ଷେତ୍ରିୟ ସେନାପତିମାନଙ୍କୁ ! କଳିଙ୍ଗ ଶିଳାଶିଳ୍ପୀମାନଙ୍କର କୋଣାର୍କ ପରି ବିଜୟ ସନ୍ତକ ନିର୍ମାଣ ଭାରତରେ ବିରଳ ।

ଜଗନ୍ନାଥଙ୍କର ଆଶୀର୍ବାଦ ରହିଛି ଓଡିଶା ପାଇଁ । ରାଜ୍ୟଟି ପ୍ରାକୃତିକ ପ୍ରତିବନ୍ଧକରେ ଭରା ବାହାର ଶତ୍ରୁମାନଙ୍କ ପାଇଁ । ପାହାଡ, ଜଙ୍ଗଲ ଭରା ଏହାର ସ୍ଥଳସୀମା । ଅବଶିଷ୍ଟ ମହୋଦଧି । ପୁଣି ଯୁଦ୍ଧର ପ୍ରଧାନ ଆୟୁଧ କୃଷ୍ଣକାୟ କଳିଙ୍ଗ ହସ୍ତୀ ଶତ୍ରୁର ନିଦ ହଜାଇଦିଏ । ଏମିତି ରାଇଜକୁ ବି ଯବନ ଆସିବାକୁ କେତେ ଉପକ୍ରମ କରିଥିଲେ ଗଙ୍ଗଶାସନରେ । କେବେ ଆକ୍ରମଣକାରୀ ନିଜ ସମ୍ରାଟ୍ଙ୍କ ମୃତ୍ୟୁ କାରଣରୁ ଓଡିଶା ଆକ୍ରମଣ କରି ନପାରି ବାଟ ହୁଡି ଫେରିଯାଆନ୍ତି । କେବେ ବା କେଇ ପୁଞ୍ଜା ପ୍ରଶିକ୍ଷିତ କଳିଙ୍ଗ ହାତୀ ଦାବି କରି ହାସଲ କରନ୍ତି ଓ ମୁହଁ ଲେଉଟାଇ ପଳାନ୍ତି । କିନ୍ତୁ ବିଗତ ଦୁଇଶହ ବର୍ଷ ଧରି ସେଇ ବଙ୍ଗଳା ଯବନମାନେ ଆଖିତରାଟି ଅନାଇଁଛନ୍ତି ଓଡିଶାକୁ । ଓଡିଶା ନୃପତି ଦକ୍ଷିଣକୁ ଗୋଡ ଟେକିଲେ ମନ୍ଦାରନ ଟପି ପୁରୀ ରତ୍ନଭଣ୍ଡାର ପର୍ଯ୍ୟନ୍ତ ଆସିବାକୁ ଉଦ୍ୟମ କରୁଛନ୍ତି ।

ଏହି ଭୟ ମନରେ କେତେଥର ଦକା ସୃଷ୍ଟି କଲାଣି ଗଜପତିଙ୍କ ମନରେ । ପୁଣି ସମସ୍ତଙ୍କ ଜାଣତରେ ପର୍ଯ୍ୟାପ୍ତ ସମ୍ପତ୍ତି ଆଣି ରତ୍ନଭଣ୍ଡାର ଭରିଛନ୍ତି ନିଜେ । ଏଇଟା କଅଣ ଯବନ ଜାଣି ପାରିବେନି ? ଜଗନ୍ନାଥଙ୍କ ମନ୍ଦିରକୁ ମେଘନାଦ ପାଚେରି ସିନା କରାଇଲି, କିନ୍ତୁ ଜଗନ୍ନାଥଙ୍କ ସୁନାବେଶ ନିଶ୍ଚୟ ଦିନେ ବିପତ୍ତି ଆଣିବ, ଏହି ଭୟ ଗଜପତିଙ୍କ ମନରୁ ଲିଭିବ ନାହିଁ ।

‘‘ଲୁଚେଇ ଛପେଇ ରତ୍ନଭଣ୍ଡାର ଭରିଥିଲେ ବୋଧେ ଯବନମାନେ ଜାଣିପାରି ନଥାଆନ୍ତେ । ଏ ଭୟକୁ ଗଜପତି କପିଳେନ୍ଦ୍ର ପ୍ରଶ୍ରୟ ଦିଏନି । ଆମ ଓଡିଶାରେ ଆମେ ଚୋରକୁ ଡରି ଖପରାରେ ଖାଇବୁ ? ନା, ଅସମ୍ଭବ ଏଇଟା ଓଡିଆ ଚରିତରେ । ସେଇ ଯବନକୁ ଆକ୍ରମଣ କରି ବିତାଡିତ କରିବୁ ଏଇ ମାଟିରୁ । ଯୁଗେ ଯୁଗେ ଓଡିଶା ଯବନମୁକ୍ତ ହୋଇ ରହୁ ।’’ ଗଜପତିଙ୍କର ଛାତିର ହୃତ୍‌ସ୍ପନ୍ଦନ ଟିକିଏ ଉପଶମ ହେଲା ।

ବୃଦ୍ଧ ଗଜପତିଙ୍କ ପାଖରେ ଆସି ଅନ୍ତରଙ୍ଗ ଉଚ୍ଛବ ପହଞ୍ଚିଗଲେଣି ।

ବ୍ୟସ୍ତ ହୋଇ ଗଜପତି ପଚାରୁଛନ୍ତି, ‘‘ହେ ଉଚ୍ଛବ, ଆମର ବାରବାଟୀ ଛାଡିବା ସମୟ ଆଉ କେତେ ବାକି ଅଛି ?’’

‘‘ଯାନବାହନ ସବୁ ପ୍ରସ୍ତୁତ ହୋଇ ରହିଛି । ଦୁଇ ଘଡି ପରେ ଆମର ଶୁଭଯାତ୍ରା ଯୋଗ ରହିଛି । ଆବଶ୍ୟକମତେ ଆପଣଙ୍କ ସହିତ ମୋ ସମେତ ୬ ଜଣ ମହାପାତ୍ର ଦକ୍ଷିଣକୁ ଗସ୍ତ କରିବେ । ଆପଣଙ୍କ ଘୋଡାଗାଡିକୁ ଅନୁସରଣ କରିବେ ଅଶ୍ୱାରୋହୀ ମହାପାତ୍ରମାନେ । ଅଳ୍ପ ଦୂରର ଅନ୍ତରରେ ମଣିମା ଚାହିଲେ କିଛିଟା ବିଶ୍ରାମ ନେଇପାରିବେ । ଆମର ଗମନ ପଥରେ ଓଡିଶା ସମର ବାହିନୀ ପ୍ରସ୍ତୁତ କରି ଅପେକ୍ଷା କରିଛି ବିଶ୍ରାମ ନିବାସ । ସଂଧ୍ୟା ହେବାକୁ ଦୁଇ ଘଡି ବାକି ଥିବ, ଆମର ରାତ୍ରୀ ବିଶ୍ରାମ ଗଡ ଆସିବ । ବିଶ୍ରାମ ସହିତ ମଣିମା ମହାପାତ୍ରମାନଙ୍କୁ ନିଜ ଆସନ୍ତା ପରିକଳ୍ପନାକୁ ବ୍ୟକ୍ତ କରିବାର ଅବକାଶ ପାଇବେ ।’’ ଏମିତି ଧୀର ଆଉ ଗମ୍ଭୀର ସ୍ୱରରେ ଅନ୍ତରଙ୍ଗ ମହାପାତ୍ର ଉଚ୍ଛବ ପ୍ରକାଶ କଲେ ।

ଓଡିଶା ନିଜର ଶକ୍ତିର ପରିଚୟ ଦେଇଛି ଏବଂ ଭାରତବର୍ଷ କାହିଁକି ସାରା ବିଶ୍ୱରେ ସର୍ବବୃହତ୍ ସାମରିକ ଶକ୍ତି ଭାବରେ ଆକଳିତ ।

ପୁଣି ଗଜପତିଙ୍କର ନିର୍ନିମେଷ ଦୃଷ୍ଟିର ଉତ୍କଣ୍ଠା ଦୂର କରିବାକୁ କହିବା ଆରମ୍ଭ କଲେ, ‘‘ମୁଁ ଆପଣଙ୍କ ସେବା ଆଉ ଦୈନନ୍ଦିନ ଆବଶ୍ୟକତା ଅନୁସାରେ ମାତ୍ର ଛଅଜଣ ମହାପାତ୍ର ବାଛି ପ୍ରସ୍ତୁତ କରିରଖିଛି । ଆମ ସାଥିରେ ରହିବେ

ସନ୍ଧିବିଗ୍ରହ ମହାପାତ୍ର ସମରେଶ ବାହୁବଳେନ୍ଦ୍ର । ସମର ଆଉ ସନ୍ଧିର ପରାମର୍ଶଦାତା । ସିଏ ଓଡିଶା ସାମ୍ରାଜ୍ୟର ସନ୍ଧିବିଗ୍ରହକ ସଂଗଠନର ମୁଖ୍ୟ । ତାଙ୍କ ପାଖରେ କେବଳ ଓଡିଶା ଓ ପଡୋଶୀ ରାଜ୍ୟ ସୀମା ବିବାଦ ଓ ପାରସ୍ପରିକ ସମ୍ପର୍କ ସହିତ ସମଗ୍ର ଭାରତବର୍ଷର ଆଭ୍ୟନ୍ତରୀଣ କୂଟନୀତି ଆଉ ସମର ପ୍ରବଣତାର ଅଧ୍ୟୟନ ରହିଛି । ଆଜି ଆମର ଓଡିଶା ଆଉ ବିଜୟନଗର ଭିତରେ ରହିଥିବା ଗୁପ୍ତ ନୀତି ଯଦି ଖିଲାପ ହେଉଥିବ ଅବା ଆମ ଗଜପତି ପରିବାରର ଆଭ୍ୟନ୍ତରୀଣ କନ୍ଦଳର ଫଳସ୍ୱରୂପ ଆମ ଭିତରୁ କିଏ କିମ୍ବା ସ୍ୱୟଂ ଆଜିର ବିଜୟନଗର ଅଧିପତି ଲାଭ ଉଠାଇବାକୁ ଚେଷ୍ଟା କରୁଥିବେ, ଏହାର ତଦନ୍ତ ଆଉ ପ୍ରତିକାର କରିବାର ଦାୟିତ୍ୱ ରହିବ ଆମ ସନ୍ଧିବିଗ୍ରହ ମହାପାତ୍ରଙ୍କ ହାତରେ ।

ନଶୁଣିଲା ପରି ମନେହେଲା ଗଜପତି । ପୁଣି ଆଉ କଅଣ କହିବ ବୋଲି ଅନ୍ତରଙ୍ଗ ଉଚ୍ଛବ ମୁହଁକୁ ଚାହିଁଲେ ।

ପ୍ରତିରକ୍ଷା ବାବଦରେ ମହାପାତ୍ର ବି ପ୍ରସ୍ତୁତ ଅଛନ୍ତି ଆମ ସାଥିରେ ଯିବାକୁ । ଭୀମ ଭୁଜବଳ ଓଡିଶାର ପ୍ରତିରକ୍ଷା ବିଭାଗର ମୁଖ୍ୟ । ପଶ୍ଚିମର ମଧ୍ୟଦେଶ ବି ସେମିତି ଶାନ୍ତ ଅଛି । ବିଗତ ଦଶନ୍ଧିରେ ଓଡିଶାର ନିୟମିତ ଦାକ୍ଷିଣାତ୍ୟ ବିଜୟର ସମ୍ବାଦରେ ସାରା ଦେଶରେ ଚହଳ ସୃଷ୍ଟି କରିଛି । ଓଡିଶା ନିଜର ଶକ୍ତିର ପରିଚୟ ଦେଇଛି ଏବଂ ଭାରତବର୍ଷ କାହିଁକି ସାରା ବିଶ୍ୱରେ ସର୍ବବୃହତ୍ ସାମରିକ ଶକ୍ତି ଭାବରେ ଆକଳିତ । ଗଜପତି ଦକ୍ଷିଣ ଭାରତରୁ ଯଦି ଗୋଡ କାଢି ଉତ୍ତରକୁ ଓଡିଶା ସାମରିକ ବାହିନୀର ଗଜଶକ୍ତିକୁ ପଲଟଣ କରିଦେବେ, ଦିଲ୍ଲୀ ବାରାଣସୀର ସବୁ ଯବନ ଆତ୍ମରକ୍ଷା ପାଇଁ ନିଜ ଦେଶକୁ ବାହୁଡି ଯିବେ । ତାହା ବି ଭୀମ ଭୁଜବଳଙ୍କ ଭବିଷ୍ୟ ଆକଳନ ।

ଭୁଜବଳ ମଣିମାଙ୍କ ସବୁ ଆଦେଶ ସମନ୍ୱୟ କରି ଦକ୍ଷିଣରେ ଓଡିଶା ସାମ୍ରାଜ୍ୟର ପରିଚ୍ଛା ଓ ସାମନ୍ତରାଜାମାନଙ୍କର ଦେୟ ଆଉ ସେମାନଙ୍କୁ ପ୍ରତିରକ୍ଷା ବାବଦ ଆମର ସାମରିକ ବ୍ୟୟର ଆପେକ୍ଷିକ ଆକଳନ କରି ପ୍ରତି ଗସ୍ତ ରାଜ୍ୟରେ ବିବରଣୀ ପ୍ରଦାନ କରିବେ ।''

ଏହା କହିସାରି ଅନ୍ତରଙ୍ଗ ଉଚ୍ଛବ ମହାପାତ୍ର ଗଜପତିଙ୍କ ମନର ଭାଷା ଜାଣିବାକୁ ତାଙ୍କୁ ଚାହିଁଲେ ।

ଗଜପତି ଶୁଣିଲେ କି ଅନ୍ୟମନସ୍କ ଅଛନ୍ତି, ଅନ୍ତରଙ୍ଗ ଜାଣି ପାରିଲେନି । ଗଜପତି ଜାଣିଶୁଣି ନିରବ ରହୁଛନ୍ତି କି ଅନ୍ୟମନସ୍କ ରହୁଛନ୍ତି ଏ ବିଷୟରେ ତାଙ୍କର ସଂଶୟ ଆସିଲା ।

ପଚାରିଲେ ଅନ୍ତରଙ୍ଗ ଉଚ୍ଛବ, ''ମଣିମା ମୋର ଦୋଷଥିଲେ କ୍ଷମା କରିବେ । ଆମେ ସନ୍ଧିବିଗ୍ରହ ଆଉ ପ୍ରତିରକ୍ଷା ମହାପାତ୍ରଙ୍କୁ ଆମ ଦାକ୍ଷିଣାତ୍ୟ ପର୍ଯ୍ୟବେକ୍ଷଣ ନିମନ୍ତେ ଅନ୍ତର୍ଭୁକ୍ତ କରିବା କି ନାହିଁ ?''

ଗଜପତି ଅବିଳମ୍ବେ ଉତ୍ତର ଦେଲେ, ''ସେମାନେ ତୁମ କଥା ମୁତାବକ ଆମ ସହିତ ଯିବେ ।''

ଆଶ୍ୱସ୍ତ ହେଲେ ଉଚ୍ଛବ । ବୁଝିଲେ ଗଜପତି ଶୁଣୁଛନ୍ତି । ନଶୁଣିଲା ପରି ମନେ ହେଉଛନ୍ତି ।

କହି ଚାଲିଲେ ସିଏ, ''ଆମ ସାଥିରେ ବି ଯିବେ ଆଉ ଜଣେ ସନ୍ଧିବିଗ୍ରହ ମହାପାତ୍ର । ନାମ ତାଙ୍କର ଦ୍ୱାର-ରକ୍ଷକ ତ୍ରିବିକ୍ରମ । ତାଙ୍କର ପଦବୀ ଥାଉ-ଦ୍ୱାର ପରିଖା । ଦେବ ମନ୍ଦିର ଓ ଭକ୍ତି ଭାବର ସକଳ ନିର୍ଣ୍ଣୟ ରହିଛି ତାଙ୍କ ପାଖରେ । ଦେବଭକ୍ତ ପ୍ରଜା ପରିଗଣନାରେ ଓଡିଶା ସବୁବେଳେ ଆଗରେ । ଯେଉଁ ଦେଶ ଦେବାଦେବୀ ଆଉ ଈଶ୍ୱରୀୟ ଶକ୍ତିର ପୂଜକ, ତାହାର ବିପରୀତ କଥାରେ ଗୁପ୍ତରେ କୁତ୍ସାରଟନା କରୁଛି ଦକ୍ଷିଣର ବିଜୟନଗର ପ୍ରଶାସନ । ଓଡିଶାରୁ ସଂସ୍କାର ନିମନ୍ତେ ଜଣେ ମହାପାତ୍ର ସେଇ ଅଞ୍ଚଳରେ ପରିଚ୍ଛାଙ୍କର ଉପଦେଷ୍ଟା ହୋଇ ରହିଲେ, ଗଳାଭାଇ ବୋଲି ଯେଉଁ ସଂକୀର୍ଣ୍ଣତାର ଆଶ୍ରୟ ନେଇ ବିଜୟନଗର ଓଡିଶାର ସ୍ୱାର୍ଥ ବିରୁଦ୍ଧରେ ଯାଉଛି, ତାହାର ପ୍ରତିକାର ହୋଇପାରିବ ।''

ତଥାପି ଗଜପତି ଶୁଣି ନ ଶୁଣିଲା ପରି ବସିଛନ୍ତି ।

କଥା ପୁଣି ଆରମ୍ଭ କରନ୍ତି ଅନ୍ତରଙ୍ଗ । ''ଆମ ସାଥିରେ ବି ଦୁଇଜଣ ପୂଜକ ମହାପାତ୍ର ପୁରୁଷୋତ୍ତମ କ୍ଷେତ୍ରରୁ ଯିବେ ।''

ଶୁଣି ଚମକି ଉଠିଲେ ଗଜପତି । ଯେମିତି ସିଏ ମନେମନେ ଖୋଜି ବୁଲୁଥିଲେ ବଡଠାକୁରଙ୍କ ସହାୟ । ତାଙ୍କର ଏହି ପ୍ରାପ୍ତ ବୟସରେ ଭଗବତ୍ ଭକ୍ତିର ନିଦର୍ଶନ ସ୍ୱରୂପ ପୁରୁଷୋତ୍ତମଙ୍କ ସାନ୍ନିଧ୍ୟ ନିତାନ୍ତ କାମ୍ୟ । ଏଥିନେଇ ଅନ୍ତରଙ୍ଗ ଉଚ୍ଛବଙ୍କ ଆଡକୁ ଚାହିଁ ରହିଲେ ।

କଥା କହି ଚାଲିଲେ ଅନ୍ତରଙ୍ଗ, ''ସେଇ ଦୁଇଜଣ ହେଲେ ଜଣେ ପୁରୋହିତ ମହାପାତ୍ର ଆଉ ଜଣେ ରାଜଗୁରୁ ମହାପାତ୍ର । ସେମାନେ ଗଜପତିଙ୍କର ପ୍ରତିଟି ଗଡରେ ରହିଥିବା ପୁରୁଷୋତ୍ତମ ମନ୍ଦିରରେ ଗଜପତିଙ୍କ ରହଣି ସମୟରେ ଗଜପତିଙ୍କ ତରଫରୁ ବିଶେଷ ପୂଜା ଅନୁଷ୍ଠାନ ସମାପନ କରିବେ । ରହିବା ଦିନଟିଏ ବା ଅଧିକ ହେଉ, ସନ୍ନିକଟ ପୁରୁଷୋତ୍ତମ ପୂଜା ପାଇବେ । ଯେଉଁ ପୁରୋହିତ ମହାପାତ୍ର ଯିବେ, ସିଏ ହେଉଛନ୍ତି ସୁଦର୍ଶନ ରଥଶର୍ମା । ପୂଜା କର୍ମରେ ଜଗନ୍ନାଥ ମନ୍ଦିରରେ ଓଡିଶାର ଜଣେ ବିଶିଷ୍ଟ ପୁରୋହିତ । ପୁରୁଷୋତ୍ତମ ମନ୍ଦିରରେ ନିଜ ପାଳିରେ ପୂଜା ସମ୍ପନ୍ନ କରି ପୌରହିତ୍ୟର ନିଦର୍ଶନ ସୃଷ୍ଟି କରିଛନ୍ତି । ସିଏ ଆଗ୍ରହର ସହିତ ପ୍ରସ୍ତୁତ ଅଛନ୍ତି ।

ଆଉ ରାଜଗୁରୁ ମହାପାତ୍ର ଆପଣଙ୍କ ପାଖେପାଖେ ରହିବା କଥା । କୌଣସିଟି ଧର୍ମ ସମ୍ବନ୍ଧୀୟ ସଂଶୟ ଦୂର କରିବାକୁ ଆମ ଭିତରେ ରହିବେ । ଏମିତି ଆମ ଭିତରେ କ୍ଷୁଦ୍ର ଓଡିଶାଟିଏ ରହିଲେ ବୋଲି ମୋତେ ବୋଧ ହେଉଛି । ମଣିମା ଏହା ବାଦ୍ ଯଦି ଆଉ କିଛି ଆଦେଶ ଦିଅନ୍ତି, ଅନ୍ତରଙ୍ଗ ଅବିଳମ୍ବେ ପାଳନ କରିବାକୁ ଅପେକ୍ଷା କରିଛି ।''

ଗଜପତି ପାଟି ଖୋଲିଲେନି । କିନ୍ତୁ ମୁଣ୍ଡ ହଲାଇ ସମର୍ଥନ କରିବାର ଠାର ଦେଲେ । ଆଉ ବି ମୁଖଭଙ୍ଗୀର ପୂର୍ଣ୍ଣତା ପରିପ୍ରକାଶ ଅନ୍ତରଙ୍ଗ ଉଚ୍ଛବକୁ ଆନନ୍ଦ ଦେଲା । ଆଉ କାହାକୁ ଧନ୍ଦିବାକୁ ଆବଶ୍ୟକ ପଡିଲାନି ।

କିନ୍ତୁ ଏହି ମାନସିକ ପୂର୍ଣ୍ଣତାକୁ ଅନୁସରଣ କରୁଥିଲା ଗଜପତିଙ୍କର ମାନିସକ ଆବେଗ । ମୂଳ ଓଡିଶା ଗୋଟିଏ ଅନିର୍ଦ୍ଦିଷ୍ଟ ପରିସ୍ଥିତିରେ ସିଏ ଛାଡି ଯାଉଛନ୍ତି । ଓଡିଆ ମାନସିକତାର ମହାମେରୁ ପ୍ରଭୁ ଜଗନ୍ନାଥଙ୍କର ଚକାଡୋଳାର ଦୃଷ୍ଟି ମଣ୍ଡଳରୁ ଅପସାରିତ ହେଉଛନ୍ତି । ଆତ୍ମୀୟସ୍ୱଜନ ଆଉ ଘରଦ୍ୱାର ମନ ଭିତରେ ବାନ୍ଧିଥିବା ଚିରସ୍ଥାୟୀ ବସା ଅପେକ୍ଷା ମାନସିକ ଆଧାତ୍ମିକ କୋଠରିରେ ଅଲିଭା ଦୀପ ପରି ଜଳି ଚାଲିଥିବା ଜଗନ୍ନାଥ ଭକ୍ତି ଯେ ଆହତ ହେଉଛି, ଏହା ସହଜରେ ବାରି ହୋଇ ପଡୁଛି । ଗଜପତି ଜୀବନର ଅଷ୍ଟମ ଦଶକର ଶେଷ ଭାଗରେ ଭବିଷ୍ୟତକୁ କେତେ ଆଶାଜନକ ଦେଖିପାରୁଛନ୍ତି, ତାଙ୍କୁ ଜଣା ।

ମନରେ କୋହ ସମ୍ବରଣ କରନ୍ତି ଗଜପତି ମଉଡମଣି । ପୁରୀରେ ପୁରୁଷୋତ୍ତମ ଜଗନ୍ନାଥଙ୍କୁ ଛାଡି ସିଏ ଯିବେ ଦକ୍ଷିଣକୁ । ମନରେ ଛାଡି ପାରୁନାହାନ୍ତି ଭରସା ସେଇ ବଡ ଠାକୁରଙ୍କର । ସାଙ୍ଗରେ ଯାଉଥିବା ଦୁଇଜଣ ଆଧାତ୍ମିକ ମହାପାତ୍ର ତାଙ୍କୁ ସତତ ସେଇ ଚକାଡୋଳାର ସ୍ମରଣ କରାଇବେ ।

> ଯାହାର ଉପସ୍ଥିତି ପ୍ରତିଟି ଯୁଦ୍ଧର ସାମ୍ମୁଖ୍ୟରେ, ସେ ଆଜି କିପରି ପଛଘୁଞ୍ଚା ଦେବ? ବୟସ କେବେ ରାଜାର ମାନସିକତାକୁ ବୃଦ୍ଧ କରିଦିଏନି ।

**କିପରି ଛାଡିବି ତୁମ ଭରସା ହେ ଜଗନ୍ନାଥ!**

କାହିଁକି ଆଜି ମନରେ ଆଶଙ୍କା ଉପୁଜେ ହେ ମହାପଭୁ ! ଦୂର ଦିଶେ ଦାକ୍ଷିଣାତ୍ୟ । ଏ ନୟନଯୁଗଳ ଫେରି ପାରିବ ତ ! ପୁନରାୟ ତୁମର ମୁଗ୍ଧରୂପ ଦର୍ଶନ କରିବାକୁ ?

କିନ୍ତୁ ଅନ୍ତରଙ୍ଗ ଉଚ୍ଛବଙ୍କ ମନରେ ଆସିଲା କିଛି ସମବେଦନା । ମଉଡମଣି ଗଜପତି ଏହି ବୟସରେ ଓଡିଶା ସାମ୍ରାଜ୍ୟର ଅର୍ଜିତ ଉଚ୍ଛୃଙ୍ଖଳ ଦକ୍ଷିଣ ସୀମାର ତତ୍ତ୍ୱାବଧାନ କରିବାକୁ ଯାଉଛନ୍ତି, ମନରେ ଆଣୁଛି ଅନେକ ଭୟ, କାରୁଣିମା ଆଉ କୋହ । ଏହି ମହାପ୍ରାଣ କଅଣ ମୂଳ ମାତୃଭୂମିଠାରୁ ଦୂରରେ ବିପଦ ବରଣ କରିବାର ସମ୍ଭାବନା ଅଛି କି ? ତାଙ୍କୁ ପଦେ କହି ନିବୃତାଇବି ନାହିଁ କାହିଁକି ?

ନା, ଅସମ୍ଭବ । ଇୟେ ଆଉ କିଏ ନୁହଁନ୍ତି ଭଳି ଯିବେ । ତଥାପି ପଦଟିଏ କହିବି । ଏମିତି ଅନ୍ତରଙ୍ଗ ମହାପାତ୍ରଙ୍କ ମନରେ ଆସିଛି ।

ମଣିମା, କ୍ଷମା କରିବେ, ଆପଣଙ୍କର ଏହି ସମୟରେ ବାରବାଟୀ କଟକରେ ରହିବା ଆବଶ୍ୟକ ରହିଛି । ମୁଁ ଦୁଇଜଣ ମହାସେନାପତିଙ୍କ ସହିତ କୋଣ୍ଡାଭିଡୁ ଯାଇ ସେଠି ଅବସ୍ଥିତ ପରିଚ୍ଛା କୁମାର କପିଳେଶ୍ୱର ମହାପାତ୍ରଙ୍କ ସହିତ ସୈନ୍ୟ ପରିଚାଳନା କରାଇ ଉଦୟଗିରିକୁ ଶତ୍ରୁମୁକ୍ତ କରିପାରିବି । ଦକ୍ଷିଣ ସୀମାରେ ଆମର ଯେତିକି ଗଜବଳ ଆଉ ପଦାତିକ ଅଛନ୍ତି, ସମଗ୍ର ଦାକ୍ଷିଣାତ୍ୟରେ ବି ନଥିବେ । ତେବେ ତିନି ଚାରି ଗଡର ସାମଗ୍ରିକ ଶକ୍ତି ବାହାମନି, ବିଜୟନଗର ଆଉ କିଛି କ୍ଷୁଦ୍ର ରାଜ୍ୟଗୁଡିକୁ ପରାହତ କରିବାର ଅବକାଶ ରହିବନି ।

### ଗର୍ଜି ଉଠିଲେ ଗଜପତି

କଅଣ କହୁଛ ତୁମେ ଅନ୍ତରଙ୍ଗ ମହାପାତ୍ର! କାହିଁକି ଭାବୁଛ ଏ କପିଳେନ୍ଦ୍ର ଅସମର୍ଥ ! ଜୀବନରେ ଅଳସ କରି କେବେ ଚୁପ୍ ହୋଇ ବସିଯାଇନି ସେନାପତି କପିଳେନ୍ଦ୍ର, ଗଜପତି କପିଳେନ୍ଦ୍ର । ଯାହାର ଉପସ୍ଥିତି ପ୍ରତିଟି ଯୁଦ୍ଧର ସାମ୍ମୁଖ୍ୟରେ, ସେ ଆଜି କିପରି ପଛଘୁଞ୍ଚା ଦେବ ? ବୟସ କେବେ ରାଜାର ମାନସିକତାକୁ ବୃଦ୍ଧ କରିଦିଏନି । ତୁମେ ଆଜିର ଥାଟ ସମ୍ପୂର୍ଣ୍ଣ କର, ମୁଁ ଏବେ ଦକ୍ଷିଣ ଗସ୍ତ ପାଇଁ ପ୍ରସ୍ତୁତ ।

### ତଥ୍ୟ ଧାରିକା


୧. ପାଣିଗ୍ରାହୀ, କେ.ସି., *History of Odisha*, Kitab Mahal, Cuttack, 2015

୨. ବାନାର୍ଜୀ, ଆର୍.ଡି., *History of Odisha,* Abhijeet Publications, New Delhi, 1930

୩. ମୁଖାର୍ଜୀ, ପି.କେ., *History of Gajapati Kings of Orissa and their Successors,* Kitab Mahal, Cuttack, 1981

୪. ଆଚାର୍ଯ୍ୟ ଶ୍ରୀନିବାସ, ଶ୍ରୀଗଜପତି ମାଗାଜିନ୍, ଗଜପତି କପିଳେନ୍ଦ୍ର – ଶ୍ରୀକ୍ଷେତ୍ର – ଶ୍ରୀଜଗନ୍ନାଥ



ସମାରୋହ, ୧୨୮, ଡୁମୁଡୁମା (କ)
ଖଣ୍ଡଗିରି, ଭୁବନେଶ୍ୱର – ୩୦




# ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ: ବ୍ୟକ୍ତିତ୍ୱ ଓ କୃତିତ୍ୱ

ସୁରେଶ କୁମାର ପ୍ରଧାନ

ଉତ୍କଳ ଜନନୀର ରତ୍ନଗର୍ଭା ନାମକୁ ସାର୍ଥକ କରିଥିବା କେତେକ ବରପୁତ୍ରମାନଙ୍କ ମଧ୍ୟରେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ଅନନ୍ୟ ଓ ଅନ୍ୟତମ । ତାଙ୍କର ସମଗ୍ର ଆୟୁକାଳ ଉତ୍କଳ ଜନନୀର ସେବାରେ ଥିଲା ଉତ୍ସର୍ଗୀକୃତ । ମହାରାଜାଙ୍କ କୃତିତ୍ୱ ଓ ବ୍ୟକ୍ତିତ୍ୱ କୋଟି ଓଡିଆଙ୍କ ନିକଟରେ ଆଜି ସ୍ମରଣୀୟ ହୋଇରହିଛି । ନବଉତ୍କଳର ନିର୍ମାତା ଭାବେ ତାଙ୍କ ଜାତିପ୍ରାଣତା ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ଦେଶ ଓ ଜାତି ଗଠନରେ ମହାରାଜାଙ୍କ ଆତ୍ମୋତ୍ସର୍ଗ ସମଗ୍ର ଦେଶରେ ଏକ ଉଦାହରଣ ସୃଷ୍ଟି କରିବାରେ ସକ୍ଷମ ହୋଇଥିବା ସ୍ପଷ୍ଟ ହୁଏ । ଖଣ୍ଡବିଖଣ୍ଡିତ ଉତ୍କଳ ଜନନୀର ପୂର୍ଣ୍ଣାଙ୍ଗ ଚିତ୍ର ଅଙ୍କନର ସେ ଥିଲେ ଅପୂର୍ବ ଚିତ୍ରକର । ତାଙ୍କ ଅଦମ୍ୟ ଉତ୍ସାହ, ଉଦ୍ଦୀପନା ଓ ତ୍ୟାଗର ଫଳଶ୍ରୁତି ହେଉଛି ଆଜିର ନୂତନ ଉତ୍କଳ । ଜଣେ ଆଦର୍ଶ ପ୍ରଜାନୁରଞ୍ଜନ ନରପତି ଭାବେ ସମଗ୍ର ଦେଶରେ ତାଙ୍କ ପ୍ରଜାବତ୍ସଳତା ଆଜି ପ୍ରେରଣାର ଉତ୍ସ ହୋଇପାରିଛି ।

ମହାନ୍ ଦେଶଭକ୍ତ ଉତ୍କଳପ୍ରାଣ ପୁଣ୍ୟାତ୍ମା ଶ୍ରୀରାମଚନ୍ଦ୍ରଙ୍କ ଜନ୍ମ ହେଉଛି, ମୟୂରଭଞ୍ଜରେ ୧୮୭୧ ମସିହା ଡିସେମ୍ବର ୧୭ ତାରିଖରେ । ପିତା କୃଷ୍ଣଚନ୍ଦ୍ର ଭଞ୍ଜଦେଓ । ପୁତ୍ର ଶ୍ରୀରାମ ଛାତ୍ରାବସ୍ଥାରେ ପିତାଙ୍କୁ ହରାଇ ଅନାଥ ହୋଇପଡିଥିଲେ । ପିତାଙ୍କ ବିୟୋଗଜନିତ ଦୁଃଖ ଓ ମନସ୍ତାପ ମଧ୍ୟରେ ତତ୍କାଳୀନ ବଂଗ- ବିହାର- ଓଡିଶାର ଛୋଟଲାଟ୍ ସାହେବଙ୍କ ତତ୍ତ୍ୱାବଧାନରେ ବିଦ୍ୟାଧ୍ୟୟନ କରିବାକୁ ପଡିଥିଲା । କଟକସ୍ଥ ମୟୂରଭଞ୍ଜ ଭବନରେ ଗୁରୁ ବ୍ରୋଟାମ କିଡେଲ ସାହେବଙ୍କ ସାହଚର୍ଯ୍ୟରେ ପାଖାପାଖି ୧୨ବର୍ଷ ଧରି ଅଧ୍ୟୟନରେ ମନୋନିବେଶ କଲେ । ୧୮୮୮ ମସିହାରେ ରେଭେନ୍ସା କଲେଜିଏଟ୍ ସ୍କୁଲରୁ ଏଣ୍ଟ୍ରାସ ପରୀକ୍ଷାରେ ପାସ୍ କଲାପରେ ରେଭେନ୍ସା କଲେଜରୁ ଏଫ୍. ଏ ମଧ୍ୟ ପାସ କଲେ । ବି.ଏ. ପଢୁଥିବା ସମୟରେ ରାଜ ସିଂହାସନ ଆରୋହଣର ସୁଯୋଗ ଆସିବାରୁ ଉଚ୍ଚଶିକ୍ଷାରୁ ବଞ୍ଚିତ ହୋଇ ରାଜ୍ୟର ଶାସନଭାର ଗ୍ରହଣ କଲେ । ତାଙ୍କର ଏହି ରାଜ୍ୟାଭିଷେକର ପୁଣ୍ୟ ମୁହୂର୍ତ୍ତ ବା ବର୍ଷ ଥିଲା ୧୮୯୨ ମସିହା ଅଗଷ୍ଟ ୧୫ । ରାଜସିଂହାସନର ଚତୁର୍ଥ ବର୍ଷରେ ଅର୍ଥାତ୍ ୧୮୯୬ ମସିହାରେ ବିବାହ ବନ୍ଧନରେ ଆବଦ୍ଧ ହେଲେ । ରାଜମୁକୁଟ ସହ ଅଜସ୍ର ଖ୍ୟାତି ଓ ପ୍ରତିପତ୍ତିର ଅଧିକାରୀ ହୋଇ ମଧ୍ୟ ରାଜାଙ୍କ ମନରେ ନଥିଲା ଗର୍ବ ଓ ଅହଙ୍କାର । ଜଣେ ମେଧାବୀ ଛାତ୍ର ଓ ବିଦ୍ୱାନ ନରପତି ହୋଇ ମଧ୍ୟ ସାଧାରଣ ଲୋକଙ୍କ ପ୍ରତି ସେ ଥିଲେ ଅତ୍ୟନ୍ତ ଉଦାର । ସରଳତା, ଅମାୟିକତା ଓ ବିନୟ ସ୍ୱଭାବ ପାଇଁ ରାଜାଙ୍କ ସୁଖ୍ୟାତି ଧିରେ ଧିରେ ପ୍ରସାରିତ ଓ ପ୍ରଚାରିତ ହେଲା । ଇଂରାଜୀ ଭାଷାରେ ଦକ୍ଷତା ଅର୍ଜନ କରିଥିବା ଶ୍ରୀରାମଚନ୍ଦ୍ର ରାଜ୍ୟ ଶାସନ ଓ ରାଜଧର୍ମ ପାଳନ ନିମିତ୍ତ ଦର୍ଶନଶାସ୍ତ୍ର ଅଧ୍ୟୟନ କଲେ । ଜ୍ଞାନୀ, ପଣ୍ଡିତ ଓ ରାଜାନୁଗତ ବ୍ୟକ୍ତିବିଶେଷଙ୍କୁ ସେ ରାଜପରିଷଦରେ ସ୍ଥାନ ଦେଇଥିଲେ । ମହାରାଜାଙ୍କ ଦୂରଦୃଷ୍ଟିର ଉଦାହରଣ ହେଲା, ଉତ୍କଳମଣି ଗୋପବନ୍ଧୁ ଦାସଙ୍କୁ ସେ ମୟୂରଭଞ୍ଜ ରାଜ୍ୟର ସରକାରୀ ଓକିଲ ଭାବେ ଗ୍ରହଣ କରି ଉପଯୁକ୍ତ ପରାମର୍ଶ ନେଉଥିଲେ । ଗୌରବର

କଥା, ଏହି ଦୁଇ ବରପୁତ୍ରଙ୍କ ଆତ୍ମୀୟତା ଥିଲା ମଣି ସହିତ ମଣିର ସଂଯୋଗ । ଉକ୍ତ ସଂଯୋଗ ବା ମହାମିଳନହିଁ ନବଉତ୍କଳର ଗଠନ ନିମିତ୍ତ ମାର୍ଗ ପ୍ରସ୍ତୁତ କରିବାରେ ବିଶେଷ ସହାୟ ହୋଇଥିଲା ।

ଓଡିଶାରେ ରହିଥିବା ୨୬ଟି ଗଡଜାତ ମଧ୍ୟରୁ ମୟୂରଭଞ୍ଜର ସ୍ଥାନ ସ୍ୱତନ୍ତ୍ର । ଅରଣ୍ୟ ସମ୍ପଦ ଘେରା, ସବୁଜିମା ଭରା ଉକ୍ତ ପ୍ରାଚୀନ ରାଜବଂଶର ସୁଯୋଗ୍ୟ ଦାୟାଦ ଥିଲେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ । ଉଭୟ ମୋଗଲ ଓ ଇଂରେଜମାନେ ଏ ଭୂଖଣ୍ଡକୁ ଅଧିକାର କରିବା ପାଇଁ ଲହୁ ଲୁହାଣ ହୋଇଯାଇଥିଲେ ।

ମୟୂରଭଞ୍ଜର ସର୍ବାଙ୍ଗୀନ ଉନ୍ନତି ପାଇଁ ମହାରାଜା ନିଜର ଶ୍ରମ, ସମୟ ଓ ଅଜସ୍ର ଅର୍ଥରାଶିକୁ ବିନିଯୋଗ କରିଥିଲେ । ରାଜସିଂହାସନ ଆରୋହଣ କରିବା ପରେ ନିଜ ରାଜ୍ୟକୁ ଏକ ବିକଶିତ ରାଜ୍ୟରେ ପରିଣତ କରିବା ପାଇଁ ଅନେକ ଜନକଲ୍ୟାଣ ଯୋଜନା ହାତକୁ ନେଇଥିଲେ । ଶାସନଗତ ଢାଞ୍ଚାରେ ଅନେକ ସଂସ୍କାର ମଧ୍ୟ ଆଣିଥିଲେ । ଶିକ୍ଷା, ସ୍ୱାସ୍ଥ୍ୟ ଓ ପୁଲିସ ବିଭାଗର ସୃଷ୍ଟି ତାଙ୍କ ଶାସନ ସଂସ୍କାରର ଏକ ମାଇଲ୍ ଖୁଣ୍ଟ । ସେହିପରି ସର୍ଦ୍ଦାର ପ୍ରଥାର ଉଚ୍ଛେଦ, ଗ୍ରାମପଞ୍ଚାୟତ ଗଠନ, ନିରପେକ୍ଷ କାଉନସିଲ ଗଠନ ଆଦି ତାଙ୍କ ଯୁଗାନ୍ତକାରୀ ପଦକ୍ଷେପର ଉଜ୍ଜ୍ୱଳ ଉଦାହରଣ । ଜଣେ ଦୂରଦୃଷ୍ଟିସମ୍ପନ୍ନ ପ୍ରଜାବତ୍ସଳ ରାଜା ଭାବେ ପୂର୍ବରୁ ଆଦାୟ ହେଉଥିବା ୪ଲକ୍ଷ ଟଙ୍କାର ରାଜସ୍ୱକୁ ୧୪ଲକ୍ଷରେ ପହଞ୍ଚାଇଥିଲେ । ୧୯୦୬ ମସିହାରେ ଏକ ବୃହତ୍ କମ୍ପାନୀକୁ ପଟ୍ଟା ଦେଇ ଗୋରୁମହିଷାଣୀ ଓ ସୁଲେଇପାଟ ପର୍ବତରୁ ଲୁହା ଆମଦାନୀ କଲେ । ନିଜ ରାଜ୍ୟର ଜନମଙ୍ଗଳ ନିମିତ୍ତ ରାଜକୋଷରୁ ୬ ଲକ୍ଷ ବ୍ୟୟକରି ବାଲଡିହା ଓ ହଳଦିଆ ନାମକ ଦୁଇଟି ଜଳଭଣ୍ଡାର କରାଇଥିଲେ । ଫଳରେ ରାଜ୍ୟରେ କୃଷିକାର୍ଯ୍ୟ ନିମିତ୍ତ ଜଳସେଚନ ସୁଗମ ହେଲା । ଗମନାଗମନ କ୍ଷେତ୍ରରେ ମହାରାଜାଙ୍କ କାଳଜୟୀ ପଦକ୍ଷେପ ସର୍ବଦା ସ୍ମରଣୀୟ । ରେଳ ଚଳାଚଳ ପାଇଁ ରୁପ୍ସା ଷ୍ଟେସନରୁ ରାଜଧାନୀ ବାରିପଦା ପର୍ଯ୍ୟନ୍ତ ରେଳପଥ ନିର୍ମାଣ କରାଇଥିଲେ । ଉକ୍ତ ରେଳ ପ୍ରକଳ୍ପର ଶୁଭକାର୍ଯ୍ୟରେ ତତ୍କାଳୀନ ସାର୍ ଆଣ୍ଡିଉ ଫେଜର ଯୋଗ ଦେଇଥିଲେ । ତାଙ୍କ ଶାସନ କାଳରେ ଶିକ୍ଷାର ଉନ୍ନତିକଳ୍ପେ ରାଜଧାନୀରେ ଏକ ଉଚ୍ଚ ବିଦ୍ୟାଳୟ ସହ ରାଜ୍ୟରେ ଚାରିଶହ (୪୦୦) ପ୍ରାଥମିକ ବିଦ୍ୟାଳୟ ସ୍ଥାପିତ ହୋଇଥିଲା ।

ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ଶାସନ କାଳରେ ମଠା, ଟସର ଶିଳ୍ପ, କାଠ, ପଥର କାରଖାନା ସ୍ଥାପିତ ହୋଇଥିଲା । ସେହିପରି ଗ୍ରନ୍ଥାଳୟ, ଡାକବଙ୍ଗଳା, ନୂତନ ଡାକ୍ତରଖାନା, ଅଦାଲତ ଗୃହମାନ ପ୍ରତିଷ୍ଠିତ ହେଲା । ରାଜ୍ୟବାସୀଙ୍କ ମଧ୍ୟରେ ସୁସମନ୍ୱୟ ଓ ଉତ୍ତମ ସହାବସ୍ଥାନ ପାଇଁ ମହାଜନୀ କାର୍ଯ୍ୟରେ ଅଙ୍କୁଶ, ଜମି ଉପରେ ଦଖଲ ସ୍ୱତ୍ୱ, ଅନାବାଦୀ ଜମିର ରକ୍ଷଣାବେକ୍ଷଣା, ଜମିଜମାର ବନ୍ଦୋବସ୍ତ, କୃଷି ପାଇଁ ଗରିବ ରୟତଙ୍କୁ ଋଣ ଓ ବିହନ ଯୋଗାଣ ଆଦି ଅନ୍ୟତମ । ଦାନ, ଧର୍ମ ଓ ଯଶ, କୀର୍ତ୍ତି ଅର୍ଜନରେ ଭଞ୍ଜବଂଶର ଥିଲା ଯଥେଷ୍ଟ ସୁନାମ । ଓଡିଶାରେ ପ୍ରତିଷ୍ଠିତ ସମ୍ଭ୍ରାନ୍ତ ଓ ସ୍ୱନାମଧନ୍ୟ ଶିକ୍ଷାନୁଷ୍ଠାନ ରେଭେନ୍ସା କଲେଜର ପ୍ରତିଷ୍ଠା ପାଇଁ କୃଷ୍ଣଚନ୍ଦ୍ର ଭଞ୍ଜ ରେଭେନ୍ସା ସାହେବଙ୍କୁ ସତେଇଶ ହଜାର ଟଙ୍କାର ଏକ ବିପୁଳ ଅର୍ଥରାଶି ପ୍ରଦାନ କରିଥିଲେ ।

ମହାରାଜାଙ୍କ ଶାସନକାଳ ୧୮୯୨ରୁ ୧୯୧୨ ଥିଲା ଭଞ୍ଜବଂଶ ଶାସନର ସୁବର୍ଣ୍ଣଯୁଗ । ଶାସନ ବ୍ୟବସ୍ଥା ପାଇଁ ତତ୍କାଳୀନ ବ୍ରିଟିଶ ସରକାର ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କୁ 'ମହାରାଜା' ଉପାଧିରେ ଭୂଷିତ କରିଥିଲେ । ଜୀବନର ପ୍ରତ୍ୟେକଟି ମୁହୂର୍ତ୍ତ ତାଙ୍କର ଅତିବାହିତ ହୋଇଥିଲା ଦେଶମାତୃକାର ସେବାରେ । ଜନକଲ୍ୟାଣ କାମନା ବ୍ୟତୀତ ପଦମଣ୍ଡନ କରିବାର ବାସନା ତାଙ୍କର ନଥିଲା । ୧୯୦୭ ମସିହା ସୁଦ୍ଧା ବଂଗ–ବିହାର–ଓଡିଶା କାଉନସିଲ୍ର ଗୋଟିଏ ମନୋନୀତ ସଭ୍ୟ ଖାଲିପଡିଥିଲା । ସଭ୍ୟପଦ ପାଇଁ ମହାରାଜା ଶ୍ରୀରାମ ଚନ୍ଦ୍ର ଭଞ୍ଜଦେଓ ଯୋଗ୍ୟ ବୋଲି ଉତ୍କଳଗୌରବ ମଧୁସୂଦନ ଯୁକ୍ତି ଉପସ୍ଥାପନ କରିଥିଲେ । ମାତ୍ର ଏଥିରେ ରାଜା ସମ୍ମତ ହେଲେ ନାହିଁ, ପରନ୍ତୁ ମଧୁବାବୁ ଏଥିପାଇଁ ଉପଯୁକ୍ତ ବ୍ୟକ୍ତି ବୋଲି ଶ୍ରୀରାମଚନ୍ଦ୍ର ଜଣାଇଥିଲେ । ଉକ୍ତ ପ୍ରସଙ୍ଗରୁ ମହାରାଜାଙ୍କ ପଦମର୍ଯ୍ୟାଦା ପ୍ରତି ଲାଳସା ନଥିବା ସ୍ପଷ୍ଟ ପ୍ରତୀୟମାନ ହୁଏ ।

ସ୍ୱତନ୍ତ୍ର ଉତ୍କଳ ଗଠନ ନିମିତ୍ତ ଗଠିତ ହୋଇଥିବା ଉତ୍କଳ ସମ୍ମିଳନୀ ଥିଲା କୋଟି ଓଡ଼ିଆଙ୍କ ଆଶା ଓ ଆଶ୍ୱାସନାର ଉତ୍ସ । ୧୯୦୩ ମସିହା ଡିସେମ୍ବର ୩୦ରେ କଟକଠାରେ ଏହାର ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଦୁଇଦିନ ଧରି ଅନୁଷ୍ଠିତ ଏହି ଅଧିବେଶନର ଉଦ୍ଦେଶ୍ୟ ଥିଲା ବିଖଣ୍ଡିତ ଓଡ଼ିଶା ଓ ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ । ଏହାର ମହନୀୟତା ହେଉଛି, ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନର ସୁଯୋଗ୍ୟ ସଭାପତି ଥିଲେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ । ମଧୁବାବୁଙ୍କ ସୁପାରିସ୍‌କ୍ରମେ ମହାରାଜା ଉକ୍ତ ପଦବୀ ମଣ୍ଡନ କରି ଉତ୍କଳ ଜନନୀ ପାଇଁ ସେବା କରିବାର ସୁଯୋଗ ପାଇଲେ । ସଭାପତି ହିସାବରେ ମହାରାଜା ଦେଇଥିବା ଉତ୍କଳ ସମ୍ମିଳନୀର ଅଭିଭାଷଣ ଆଜିବି କୋଟି ଓଡ଼ିଆଙ୍କୁ ଦେଶପ୍ରେମରେ ଉଦ୍‌ବୁଦ୍ଧ କରୁଛି ।

ମହାରାଜା ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ । କଳା ସଂସ୍କୃତି, ଭାଷା– ସାହିତ୍ୟର ସେ ଥିଲେ ଶ୍ରେଷ୍ଠ ପୃଷ୍ଠପୋଷକ । ନିଜ ରାଜ୍ୟର ଛଉ ନୃତ୍ୟର ଉତ୍କର୍ଷତା ପାଇଁ ଅନେକ କାର୍ଯ୍ୟ କରିଥିଲେ । ୧୯୧୦ ମସିହା ଡିସେମ୍ବର ୧୨ରେ ଦିଲ୍ଲୀରେ ଭାରତ ସମ୍ରାଟ୍ ଦରବାରରେ ଛଉ ନୃତ୍ୟ ପ୍ରଦର୍ଶନ କରାଇ ବ୍ରିଟିଶ ପଦାଧିକାରୀଙ୍କୁ ମନ୍ତ୍ରମୁଗ୍ଧ କରାଇପାରିଥିଲେ । ସେ ମଧ୍ୟ ଆମେରିକା, ଇଂଲଣ୍ଡ, ଚୀନ୍, ଜାପାନ ଆଦି ରାଷ୍ଟ୍ର ଭ୍ରମଣ କରି ଆହରଣ କରିଥିବା ଅଭିଜ୍ଞତାକୁ ନିଜ ରାଜ୍ୟର ମଙ୍ଗଳ ପାଇଁ ବିନିଯୋଗ କରିଥିଲେ । ଜନକଲ୍ୟାଣ ପାଇଁ ମହାରାଜା ରାଜକୋଷକୁ ସର୍ବଦା ଉନ୍ମୁକ୍ତ ରଖି ପ୍ରଜାବତ୍ସଳତାର ପ୍ରମାଣ ଦେଇ ଆସିଥିଲେ ।

କଥାରେ ଅଛି – ଦିନଯାଏ ବିତି, ରହିଯାଏ ଯଶ କୀର୍ତ୍ତି । ମହାରାଜା ଆଜି ନାହାନ୍ତି ସତ, ମାତ୍ର ସେ ଛାଡି ଯାଇଥିବା ଅକ୍ଷୟ କୀର୍ତ୍ତି ତାଙ୍କୁ ଅମର କରି ରଖିଛି । ଓଡ଼ିଶାର ବଡ ଡାକ୍ତରଖାନା କହିଲେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ ଆଣ୍ଡ ହସ୍ପିଟାଲ । ସଂକ୍ଷେପରେ (ଏସ୍.ସି.ବି)କୁ ହିଁ ଏହା ବୁଝାଇଥାଏ । ଏହି ମେଡିକାଲ ଆଜି ସ୍ୱାସ୍ଥ୍ୟସେବା କ୍ଷେତ୍ରରେ ଶ୍ରେଷ୍ଠତା ଲାଭ କରିଛି । ଉତ୍କଳର ଶ୍ରେଷ୍ଠ ସାରସ୍ୱତ କକ୍ଷ ଭାବରେ ସୁପରିଚିତ କଟକଠାରେ ଥିବା ଶ୍ରୀରାମଚନ୍ଦ୍ର ଭବନ ମହାରାଜାଙ୍କ ସ୍ମୃତିରକ୍ଷାର ଏକ ଅବିସ୍ମରଣୀୟ ସ୍ମାରକୀ । ଉକ୍ତ ଗୃହର ନିର୍ମାଣ ପାଇଁ ମହାରାଜାଙ୍କ ସୁପୁତ୍ର ପୂର୍ଣ୍ଣଚନ୍ଦ୍ର ଭଞ୍ଜ ୧୬ ହଜାର ଟଙ୍କାର ଅର୍ଥରାଶି ଦାନ କରିଥିଲେ । ୧୯୧୯ ମସିହା ଜୁଲାଇ ୧୯ତାରିଖରେ ଶ୍ରୀରାମଚନ୍ଦ୍ର ଭବନର ଭିତ୍ତିପ୍ରସ୍ତର ସ୍ଥାପିତ ହୋଇଥିଲା ଓ ୧୯୨୬ ମସିହାରେ ମହାରାଜା ଶ୍ରୀ ପୂର୍ଣ୍ଣଚନ୍ଦ୍ର ଦେବ ଏହାକୁ ଉଦ୍‌ଘାଟନ କରିଥିଲେ । ଓଡ଼ିଆ ଭାଷାର ଏକ ଜାଜ୍ଜଲ୍ୟ ଭାଷାକୋଷ କହିଲେ ଗୋପାଳଚନ୍ଦ୍ର ପ୍ରହରାଜଙ୍କ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'କୁ ବୁଝାଇଥାଏ । ଉକ୍ତ ଭାଷାକୋଷର ପ୍ରକାଶନ ନିମିତ୍ତ ଶ୍ରୀରାମଚନ୍ଦ୍ରଙ୍କ ସୁପୁତ୍ର ପ୍ରତାପଚନ୍ଦ୍ର ଭଞ୍ଜ ଦୁଇଟି କିସ୍ତିରେ ପ୍ରଥମେ ୮ହଜାର ଓ ପରେ ୫ହଜାର ପ୍ରଦାନ କରିଥିଲେ । ଏ ହେଉଛି ଭଞ୍ଜବଂଶର ଅକୁଣ୍ଠ ସାରସ୍ୱତ ପ୍ରାଣତାର ଏକ ଉଦାହରଣ । ଏତଦ୍‌ବ୍ୟତୀତ ଭଞ୍ଜବଂଶର ଅକୁଣ୍ଠ ଚିତ୍ତରେ ପ୍ରଦତ୍ତ ଧନରାଶିରେ ଓଡ଼ିଶାରେ ଗଢିଉଠିଛି ଅନେକ ଅନୁଷ୍ଠାନ । ଯାହାକି ପ୍ରତ୍ୟେକ ଓଡ଼ିଶାବାସୀ ତା'ର ସୁଫଳ ଉପଲବ୍ଧ କରିପାରୁଛନ୍ତି ।

ମହାରାଜା ଶ୍ରୀରାମଚନ୍ଦ୍ରଙ୍କ ଭଳି ପ୍ରଜାହିତୈଷୀ ନରପତି ଇତିହାସରେ ବିରଳ । ଏ କଥା ଆଲୋଚନା କଲାବେଳେ ଏକ କବିତା ପଂକ୍ତି ମନେପଡି ଯାଉଛି । 'ତୁମ୍ଭ ମାଟି–ଦେହ ଗ୍ରାସିଛି ଶ୍ମଶାନ, ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ୍' । ମହାରାଜାଙ୍କ ସ୍ଥୂଳ ଶରୀର କାଳର କବଳିତ ହେଲେହେଁ ସେ ଛାଡିଯାଇଥିବା ଅକ୍ଷୟ କୀର୍ତ୍ତି ତାଙ୍କ ଯଶଗାନ କରୁଛି । ବାସ୍ତବିକ ସେ ଥିଲେ ମାନବିକତା, ପ୍ରଜାବତ୍ସଳତା, ଉଦାରତା, ସର୍ବୋପରି ଆଦର୍ଶ ଓ ପାଣ୍ଡିତ୍ୟର ଅନନ୍ୟ ଉଦାହରଣ । ବହୁମୁଖୀ ପ୍ରତିଭାକୁ ହୃଦୟରେ ବହନ କରି ସେ ଓଡ଼ିଶାର ସ୍ୱାଭିମାନ ପାଇଁ ଆଜୀବନ ସଂଗ୍ରାମ ଜାରି ରଖିଥିଲେ । ସେ ହିଁ ଥିଲେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ବାସ୍ତବ ବିଶ୍ୱକର୍ମା । ଉତ୍କଳ ଜନନୀର ରତ୍ନଗର୍ଭା ନାମକୁ ସାର୍ଥକ କରି କମ୍ ବୟସରେ ପରପାରିକୁ ବାହୁଡି ଯାଇଥିଲେ । ଜୀବନରେ ଭୋଗବିଳାସକୁ ତୁଚ୍ଛ କରି ପ୍ରଜାଙ୍କ ହିତରେ ନିଜକୁ ଉତ୍ସର୍ଗ କରିଯାଇଥିବା ମହାରାଜା ଶ୍ରୀରାମଚନ୍ଦ୍ରଙ୍କୁ ଆଜିର ଦିନରେ ବିନମ୍ର ପ୍ରଣାମ ।

ଖୁଣ୍ଟୁଣୀ, ଆଠଗଡ଼, କଟକ

# କନିକା ମାଟିର ସ୍ୱାଧୀନତା ସଂଗ୍ରାମ

**ଡକ୍ଟର କୃତ୍ତିବାସ ନାୟକ**

ଭାରତମାତାଙ୍କୁ ଦୁର୍ଦ୍ଧର୍ଷ ଇଂରେଜମାନଙ୍କ କବଳରୁ ମୁକ୍ତ କରିବା ପାଇଁ ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନରେ ବିଭିନ୍ନ ଉପାୟରେ ବିଦ୍ରୋହର ସ୍ୱର ଉଠିଥିଲା । ସରକାରଙ୍କ ଶୋଷଣ ନୀତି ବିରୁଦ୍ଧରେ ପ୍ରଥମେ ସଚେତନ ଶିକ୍ଷିତ ତଥା ସ୍ୱାଧୀନଚେତା ଯୁବକମାନେ ସ୍ୱର ଉତ୍ତୋଳନ କରିଥିଲେ । ସେହି ସମୟରେ ଓଡିଶା ମାଟିର ସଂଗ୍ରାମୀମାନେ ଇଂରେଜମାନଙ୍କ ଅତ୍ୟାଚାର ଓ ଅନ୍ୟାୟକୁ ସହ୍ୟକରି ନପାରି ଜୀବନମୂର୍ଚ୍ଛା ସଂଗ୍ରାମ ଆରମ୍ଭ କରିଦେଇଥିଲେ । ସୁବ୍ୟବସ୍ଥିତ ଓ ସଂଗଠିତ ଭାବରେ ଓଡିଶାର ପାଇକ ବିଦ୍ରୋହ ଆରମ୍ଭ ହୋଇ ଇଂରେଜ ସରକାରଙ୍କୁ ଅସ୍ତବ୍ୟସ୍ତ କରି ପକାଇଥିଲା । ୧୮୧୭ ମସିହାରେ ସଂଗଠିତ ପାଇକ ବିଦ୍ରୋହ ପରବର୍ତ୍ତୀ ସମୟରେ ଏକ ଜାତୀୟ ଆନ୍ଦୋଳନରେ ପରିଣତ ହୋଇଥିଲା । ଏହି ପାଇକ ବିଦ୍ରୋହକୁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ଭାବରେ ଗ୍ରହଣ କରାଯାଇଛି । ୧୮୫୭ ମସିହାରେ ସଂଗଠିତ ସିପାହୀ ବିଦ୍ରୋହ ସମଗ୍ର ଭାରତବାସୀଙ୍କୁ ଜାଗ୍ରତ କରିଦେଇଥିଲା । ସ୍ୱାଧୀନତା ଆନ୍ଦୋଳନରେ ବହୁ ତ୍ୟାଗବୀର ଯୁବକ-ଯୁବତୀ, ବୃଦ୍ଧବୃଦ୍ଧାଙ୍କ ସମେତ ବଣ ମୁଲକରେ ଥିବା ସ୍ୱାଧୀନଚେତା ଲୋକ ପ୍ରାଣବଳି ଦେଇ ସହିଦ୍ ହୋଇଥିଲେ । ଅନେକ ଦେଶାନ୍ତର ହୋଇ କଳାପାଣିରେ ଦୟନୀୟ ଜୀବନଯାପନ କଲେ । ସେତେବେଳେ ଜଣେ ଜାତୀୟ ସ୍ତରର ନେତାଙ୍କ ଆବଶ୍ୟକତାକୁ ସମସ୍ତେ ଅପେକ୍ଷା କରି ରହିଥିଲେ । ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ନେତୃତ୍ୱରେ 'ଆଜାଦ୍ ହିନ୍ଦ୍ ଫୌଜ' ଗଠିତ ହୋଇ ଭାରତକୁ ସ୍ୱାଧୀନତା ଆଣି ଦେବାରେ ବିଶେଷ ତ୍ୟାଗ କରିଥିଲା । ମୋହନ ଦାସ କରମଚାନ୍ଦ ଗାନ୍ଧୀଙ୍କ ଅହିଂସା ମନ୍ତ୍ର ଏବଂ 'କୁଟି ଖାଅ-କାଟି ପିନ୍ଧ' ଆହ୍ୱାନ ସମଗ୍ର ଦେଶରେ ଚହଳ ସୃଷ୍ଟିକଲା । ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱକୁ ସମଗ୍ର ଦେଶ ସାଦରେ ଗ୍ରହଣ କରିନେଲା । ତାଙ୍କ ପଦାଙ୍କ ଅନୁସରଣ କରି ଲକ୍ଷ-ଲକ୍ଷ ସଂଗ୍ରାମୀ ସ୍ୱାଧୀନତା ଯଜ୍ଞରେ ଝାସ ଦେଲେ । ଧନୀ-ନିର୍ଦ୍ଧନ, ଜାତି, ଧର୍ମ, ବର୍ଣ୍ଣ, ପୁରୁଷ-ନାରୀ ନିର୍ବିଶେଷରେ ଭାରତବାସୀ ତାଙ୍କୁ ସର୍ବଶ୍ରେଷ୍ଠ ନେତା ହିସାବରେ ଗ୍ରହଣ କରିନେଲେ । ଗାନ୍ଧିଜୀଙ୍କ ସତ୍ୟାଗ୍ରହ, ମୌଳିକ ଶିକ୍ଷା, ସେବାକୁଟୀର, ଲବଣ ସତ୍ୟାଗ୍ରହ, ଅହିଂସା ଆନ୍ଦୋଳନ, ନାରୀ ଶିକ୍ଷାର ପ୍ରସାର, ନିଶା ନିବାରଣ, ସ୍ୱଚ୍ଛତା, ଜାତି-ଭେଦ, ବର୍ଣ୍ଣଭେଦ ଦୂରୀକରଣ, କୁଷ୍ଠରୋଗୀ ସେବା, ଆଞ୍ଚଳିକ ମାତୃଭାଷାର ବିକାଶ, ସମବାୟ ସଂସ୍ଥା ଗଠନ, ଅସ୍ପୃଶ୍ୟତା ନିବାରଣ, ଅନ୍ଧବିଶ୍ୱାସ ଦୂରୀକରଣ, ବଳି ପ୍ରଥାର ବିରୋଧ, ଶିକ୍ଷାର ପ୍ରସାର ଭଳି ଅନେକ ନୀତି ନିୟମ ଭାରତର ବିଭିନ୍ନ ଅଞ୍ଚଳରେ କାର୍ଯ୍ୟକାରୀ ହେଲା । ଅରଟରେ ସୂତାକଟା ମାଧ୍ୟମରେ ଲୋକେ ଆତ୍ମନିର୍ଭରଶୀଳ ହୋଇପାରିବେ ବୋଲି ସମସ୍ତେ ବିଶ୍ୱାସ କଲେ ।

ଏହି ଆନ୍ଦୋଳନ ଜାତୀୟ ଆନ୍ଦୋଳନ ଭାବରେ ସୁଖ୍ୟାତି ଅର୍ଜନ କରିପାରିଲା । ବଡ଼ବଡ଼ ସହରଠାରୁ ଆରମ୍ଭ କରି ଅଗମ୍ୟ ଗ୍ରାମାଞ୍ଚଳରେ ଅସଂଖ୍ୟ ସ୍ୱେଚ୍ଛାସେବୀ ଏବଂ କର୍ମୀ ଏହି ଆନ୍ଦୋଳନରେ ଯୋଗଦାନ କରି ନିଷ୍ଠାର ସହିତ ନିଜ କର୍ତ୍ତବ୍ୟକୁ ସଂପାଦନ କରିଥିଲେ ।

ଏମାନଙ୍କ ମଧ୍ୟରୁ ଅନେକ ପୁଲିସ ଅତ୍ୟାଚାର ସହି ନପାରି ଜେଲ୍ ଭିତରେ ମୃତ୍ୟୁବରଣ କଲେ । ଆଉ କେତେଜଣ ସଂଗ୍ରାମୀ ଫାଶୀ ଦଣ୍ଡ ପାଇ ସହିଦ୍ ହେଲେ । ପ୍ରମୁଖ ନେତା ଏବଂ ସହିଦ୍‌ମାନଙ୍କ ନାମ ତ ଇତିହାସରେ ରହିଗଲା, କିନ୍ତୁ ଯେଉଁ କେତେକ ସଂଗ୍ରାମୀ ଓ କର୍ମୀ ଏହି ଆନ୍ଦୋଳନକୁ ଆଗେଇ ନେଇଥିଲେ ଏବଂ ତେଜି ରଖିଥିଲେ, ସେମାନେ ଇତିହାସରେ କେବଳ ଇତ୍ୟାଦି ଓ ପ୍ରମୁଖ ଶବ୍ଦ ଭିତରେ ଲୁଚିଗଲେ । ସେମାନଙ୍କର ତ୍ୟାଗ, ନିଷ୍ଠା ଏବଂ ଦେଶପ୍ରେମ ସଂପର୍କରେ ଆମେ ଅଜ୍ଞ ହୋଇ ରହିଯାଇଛୁ ।

ସେତୁବନ୍ଧ ନିର୍ମାଣ କାର୍ଯ୍ୟରେ ଗୁଣ୍ଡୁଚି ମୂଷାର ଭୂମିକାକୁ ସିନା ରାମାୟଣକାର ଭୁଲି ନାହାନ୍ତି, କିନ୍ତୁ ଆଜିର ସମାଜ ନିଷ୍ଠାପର ତ୍ୟାଗୀ–ସଂଗ୍ରାମୀମାନଙ୍କୁ ଅତି ସହଜରେ ଭୁଲିଯାଉଛନ୍ତି, ଆଜି ସେହିଭଳି ଜଣେ ସଂଗ୍ରାମୀ ଗୋବିନ୍ଦ ଚନ୍ଦ୍ର ସାହୁଙ୍କ ସଂପର୍କରେ ଆଲୋଚନା କରିବା ।

ରକ୍ତସ୍ନାତା– କାବ୍ୟକୁଞ୍ଜ ପ୍ରାଚୀନ କନିକା ରାଜ୍ୟକୁ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ କ୍ରାନ୍ତିଭୂମି ଭାବରେ ଅଭିହିତ କରିଛନ୍ତି । ପ୍ରାଚୀନ କନିକା ମାଟିର ଐତିହ୍ୟ, ସଂସ୍କୃତି, ପରମ୍ପରା ଅବଶ୍ୟ ସର୍ବଜନବିଦିତ । କନିକାର ଇତିହାସ ତଥା ଓଡିଶାର ବିକାଶ ଦିଗରେ ଏହାର ଅବଦାନକୁ ଉପେକ୍ଷା କରାଯାଇ ନପାରେ । ସ୍ୱାଧୀନତା ଆନ୍ଦୋଳନରେ କନିକା ଅଞ୍ଚଳର ସଂଗ୍ରାମୀ ସହିଦ୍ ବାସୁ–ବିଶୁନିଙ୍କ ବଳିଦାନ ପାଇଁ ଉତ୍କଳବାସୀ ଗର୍ବିତ । ଏହିପରି ଗରିମାମୟ ମାଟିରେ ଅନ୍ୟତମ ସଂଗ୍ରାମୀ ଜନ୍ମଗ୍ରହଣ କରିଥିଲେ– କନିକା ଅଞ୍ଚଳରେ ଥିବା ବରୁଣା ଗ୍ରାମରେ । ଖରସ୍ରୋତା ନଦୀ ତଟରେ ଅବସ୍ଥିତ ବନ୍ୟାକ୍ଲିଷ୍ଟ ଅବହେଳିତ ଗ୍ରାମ ବରୁଣାରେ ସେ ୧୯୧୪ ମସିହା ଜାନୁଆରୀ ମାସ ୫ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ପିତା ପୁରୁଷୋତ୍ତମ ସାହୁ ମାତା ଚାନ୍ଦମଣି ଓ ଶିଶୁ ଗୋବିନ୍ଦକୁ କେବଳ ପ୍ରାଥମିକ ଶିକ୍ଷା ଦେବାକୁ ସମର୍ଥ ହୋଇପାରିଥିଲେ । ଶିକ୍ଷାପ୍ରତି ଅତ୍ୟନ୍ତ ଆଗ୍ରହ ଥିବା ସତ୍ତ୍ୱେ ଆଖପାଖରେ କୌଣସି ବିଦ୍ୟାଳୟ ନଥିବାରୁ ସେ ଅଧିକ ଶିକ୍ଷାରୁ ବଞ୍ଚିତ ହୋଇଥିଲେ । ଚିର ଅବହେଳିତ କନିକା ଅଞ୍ଚଳର ଜୀବନଶୈଳୀ ଥିଲା ଅତ୍ୟନ୍ତ ଶୋଚନୀୟ । ପ୍ରତିବର୍ଷ ବନ୍ୟା–ବାତ୍ୟା–ମରୁଡିର ଅତ୍ୟାଚାର ସହି ନପାରି କିଶୋର ବୟସରୁ ପିଲାମାନେ ପେଟ–ପାଟଣା ଉଦ୍ଦେଶ୍ୟରେ ପଡ଼ୋଶୀ ରାଜ୍ୟ ପଶ୍ଚିମବଙ୍ଗ, ଆସାମ ଓ ରେଙ୍ଗୁନକୁ ଚାଲିଯାଉଥିଲେ । ସେଠାରେ ଦୟନୀୟ ଜୀବନ ବିତେଇ ବିତେଇ କିଏ ନିଜ ଗ୍ରାମକୁ ଫେରୁଥିଲେ ତ ଆଉ କିଏ ଆଉ ଫେରି ପାରୁ ନଥିଲେ ।

କିଶୋର ଗୋବିନ୍ଦ ଚନ୍ଦ୍ର ସାହୁ ନିଜର ତଥା ପରିବାରର ପେଟ–ପାଟଣା କଥା ଚିନ୍ତାକରି ଗ୍ରାମବାସୀଙ୍କ ସହାୟତାରେ ସୁଦୂର କଲିକତା ଚାଲିଗଲେ । ସେଇଠି ଜଣେ ବିଦେଶୀ ମହିଳାଙ୍କର ଗୃହ–ସହାୟକ ଭାବେ ନିଯୁକ୍ତି ପାଇଲେ ।

ମଫସଲରୁ ଆସିଥିବା କିଶୋର ଗୋବିନ୍ଦ ହିନ୍ଦୀ କିମ୍ବା ବଙ୍ଗଳା ଭାଷା ବୁଝିପାରୁ ନଥିଲେ । ବିଦେଶିନୀ ଜଣକ ଇଂରାଜୀରେ କଥାବାର୍ତ୍ତା କରନ୍ତି । ତାଙ୍କ ପାଇଁ ଭାଷା ବଡ଼ ସମସ୍ୟା ହୋଇ ଉଭା ହେଲା । ତେଣୁ ବିଦେଶିନୀ ମହିଳା ଜଣକ ତାଙ୍କୁ ଅବସର ସମୟରେ ଇଂରେଜୀ ଲେଖା–ପଢ଼ା ଶିଖାଇଲେ । ଶିକ୍ଷାପ୍ରତି ଅତ୍ୟନ୍ତ ଆଗ୍ରହୀ ଥିବା ଗୋବିନ୍ଦ ଖୁବ୍ କମ୍ ଦିନ ମଧ୍ୟରେ ହିନ୍ଦୀ–ଇଂରାଜୀ ସହିତ ନିଜ ମାତୃଭାଷା ଓଡିଆକୁ ମଧ୍ୟ ଆୟତ କରିଦେଲେ ।

କଲିକତାରେ ଅନେକ ଓଡିଆ ଲୋକ ବସବାସ କରନ୍ତି । ଗୋବିନ୍ଦ ରହୁଥିବା ଅଞ୍ଚଳରେ ତାଙ୍କ ଗ୍ରାମର ଆଉ ଚାରିଜଣ ଲୋକ ଥିଲେ । ସେମାନେ ଗୋବିନ୍ଦ ସହିତ ମିଶି ବିଭିନ୍ନ ସମୟରେ ଏକତ୍ର ହୁଅନ୍ତି । ଗ୍ରାମକଥା, ଓଡିଶା କଥା ଏବଂ ଶିକ୍ଷାର ପ୍ରସାର କଥା ଆଲୋଚନା କରନ୍ତି । ତେଣୁ ତାଙ୍କୁ ବରୁଣାର ପଞ୍ଚସଖା ବୋଲି ଅନ୍ୟମାନେ କହନ୍ତି । ସେମାନଙ୍କ ଚେଷ୍ଟାରେ କଲିକତାରେ ବରୁଣା ସେବାସଙ୍ଘ ପାଠାଗାର ସ୍ଥାପିତ ହେଲା । ଅନେକ ମୂଲ୍ୟବାନ ତଥା ଉପାଦେୟ ପୁସ୍ତକ ସେହି ପାଠାଗାରରେ ରଖାଯାଇଥିଲା ।

ପ୍ରବାସୀ ଓଡିଆମାନେ ସେଥିରୁ ଅନେକ ଉପକୃତ ହେଉଥିଲେ ।

ସେହି ସମୟରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ଆନ୍ଦୋଳନ ତୀବ୍ର ଗତିରେ ବଢ଼ି ଚାଲିଥାଏ । ଏଣେ ସୁଭାଷ ବୋଷଙ୍କ ନେତୃତ୍ୱରେ ଜାତୀୟବାଦୀ ନେତା ଓ ଯୁବକ ମୁକ୍ତି ସଂଗ୍ରାମରେ ଝାସ ଦେଉଥାଆନ୍ତି । କିଶୋର ଗୋବିନ୍ଦ କେତେଜଣ ସ୍ଥାନୀୟ ଜାତୀୟବାଦୀ ସଂଗ୍ରାମୀଙ୍କ ସଂସ୍ପର୍ଶରେ ଆସି ନିଜକୁ ଜଣେ ସୈନିକ ହେବାର ସ୍ୱପ୍ନ ଦେଖୁଥିଲେ । ଦେଶପ୍ରେମରେ ଉଦବୋଧିତ ହୋଇ ସେ ନିଜ ବ୍ୟକ୍ତିଗତ ଜୀବନର ସଫଳତା–ବିଫଳତାକୁ ଗୁରୁତ୍ୱ ନ ଦେଇ ମୁକ୍ତି ଆନ୍ଦୋଳନରେ ଯୋଗ ଦେଇଦେଲେ । ତାଙ୍କୁ ଅନୁସରଣ କରି ଅନ୍ୟ ଚାରିଜଣ ଗ୍ରାମଲୋକ ମଧ୍ୟ ସେହି ପଥରେ ପଥିକ ହେଲେ । ଫଳରେ ସେବା ସଙ୍ଘ ପାଠାଗାରଟି ସବୁଦିନ ପାଇଁ ବନ୍ଦ ହୋଇଗଲା ।

ଜଣେ ତ୍ୟାଗପୂତ ନିଷ୍ଠାପର ସଂଗ୍ରାମୀ ହେବା ପରେ ଗୋବିନ୍ଦ ଚ଼ନ୍ଦ୍ର ନିଜ ଗ୍ରାମ ବରୁଣାକୁ ଫେରିଆସିଲେ । ଆଳି ଅଞ୍ଚଳରେ ଗାନ୍ଧିଜୀଙ୍କ ଆଦର୍ଶରେ ଚ଼ରଖା ସେବା କରୁଥିବା ସଂଗ୍ରାମୀ ଈଶ୍ୱରଲାଲ ବ୍ୟାସ ଓ ସହଦେବ ଦାସଙ୍କ ସାହଚ଼ର୍ଯ୍ୟରେ ଗାନ୍ଧିଜୀଙ୍କ ବହୁମୁଖୀ ସେବା କାର୍ଯ୍ୟରେ ଲାଗିପଡ଼ିଲେ । ଗ୍ରାମ ସ୍ୱରାଜ ବାର୍ତ୍ତା ଘରେ ଘରେ ପହଞ୍ଚାଇ ଚାଲିଲେ ।

ନିଜ ଗ୍ରାମ ବରୁଣାରେ ଚ଼ରଖା କେନ୍ଦ୍ର ପ୍ରତିଷ୍ଠା କରି ଗ୍ରାମବାସୀଙ୍କୁ ଏକଜୁଟ କରି ସୂତା କାଟିବା କାର୍ଯ୍ୟରେ ଉତ୍ସାହିତ କଲେ । ଗୋବିନ୍ଦ ଚ଼ନ୍ଦ୍ରଙ୍କର ଚାରିବନ୍ଧୁ ତାଙ୍କୁ ସମର୍ଥନ କରି ବିଭିନ୍ନ ଗଠନମୂଳକ କାର୍ଯ୍ୟରେ ଲିପ୍ତ ଥିଲେ । ସେମାନଙ୍କର ତ୍ୟାଗ–ନିଷ୍ଠା ଓ ଦେଶପ୍ରେମକୁ ଦେଖି ସଂଗ୍ରାମୀ ଈଶ୍ୱରଲାଲ ଏ ଅଞ୍ଚଳକୁ 'କ୍ରାନ୍ତିଭୂମି' ନାମରେ ନାମିତ କରିଥିଲେ ।

କନିକା ପ୍ରଜା ଆନ୍ଦୋଳନ ସେହି ସମୟରେ ଅତ୍ୟନ୍ତ ଉଗ୍ରରୂପ ଧାରଣ କରିଥାଏ । ସେଥିରେ ଅଂଶଗ୍ରହଣ କରି ସେ ଆନ୍ଦୋଳନର ନେତା ଚ଼କ୍ରଧର ବେହେରାଙ୍କୁ ସହଯୋଗ କଲେ । ଫଳରେ ଗୋବିନ୍ଦ ଚ଼ନ୍ଦ୍ର କନିକା ରାଜାଙ୍କ କୋପଦୃଷ୍ଟିରେ ରହିଥିଲେ ।

୧୯୩୫ ମସିହାରେ ଗାନ୍ଧିଜୀଙ୍କ ପଦଯାତ୍ରାରେ ସେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ୧୯୪୨ ମସିହାର 'ଭାରତଛାଡ଼ ଆନ୍ଦୋଳନ' ଡାକରାରେ ସାରା ଦେଶର ଜନତା ଉଗ୍ରରୂପ ଧାରଣ କରି ବିଭିନ୍ନ ସରକାରୀ ଅଫିସ ଓ ଥାନାକୁ ପୋଡିଲେ । ଇଂରେଜ ସରକାରଙ୍କର କାର୍ଯ୍ୟାଳୟରେ କଂଗ୍ରେସ ପତାକା ଲଗାଇଲେ । ଗୋବିନ୍ଦ ଚ଼ନ୍ଦ୍ର ଏହି କାର୍ଯ୍ୟରେ ଲିପ୍ତରହି ନିଜ ଗ୍ରାମ ବରୁଣାରେ ତ୍ରିରଙ୍ଗା ପତାକା ଉତ୍ତୋଳନ କରିବାର ଯୋଜନା କଲେ । ଫଳରେ ପୁଲିସ ତାଙ୍କୁ ଗିରଫ କରିନେଇ ଜେଲ୍‌ରେ ରଖିଦେଲେ । ବିଭିନ୍ନ ଦଫାରେ ତାଙ୍କୁ ଛନ୍ଦିଦେଇ ଇଂରେଜ ସରକାର ଦୀର୍ଘ ଛଅମାସ କାଳ ପାଟଣା କ୍ୟାମ୍ପ୍ ଜେଲ୍ ଓ କଟକ ଜେଲ୍‌ରେ ରଖିଦେଲେ ।

କଟକ ଜେଲ୍‌ରେ ଥିବା ସମୟରେ ଗୋବିନ୍ଦବାବୁ ସଂଗ୍ରାମୀ ପ୍ରହଲ୍ଲାଦ ମଳିକଙ୍କ ସହ ଗୋଟିଏ କୋଠରିରେ ରହୁଥିଲେ । ସେଇଠି ଦୁହିଁଙ୍କ ମଧ୍ୟରେ ଆତ୍ମୀୟତା ବଢ଼ି ଯାଇଥିଲା ।

୧୯୪୩ ମସିହାରେ ଗୋବିନ୍ଦବାବୁ ଜିଲ୍ଲା ବୋର୍ଡ଼ର ସଦସ୍ୟ, ୟୁନିୟନ ପ୍ରେସିଡ଼େଣ୍ଟ ଭାବେ ନିର୍ବାଚିତ ହୋଇଥିଲେ । ଦେଶ ସ୍ୱାଧୀନ ହେବାପରେ ବିନୋବା ଭାବେଙ୍କ ନେତୃତ୍ୱରେ ଦେଶବ୍ୟାପୀ ଭୂଦାନ ଆନ୍ଦୋଳନ ଗଢ଼ି ଉଠିଥିଲା । ଧନୀଲୋକ ଏବଂ ଜମିଦାରମାନଙ୍କଠାରୁ ଜମି ଆଣି ଭୂମିହୀନ ଗରିବମାନଙ୍କୁ ବଣ୍ଟନ କରିବାକୁ ହେବ । ଜାତିଭେଦ ଭଳି କୁସଂସ୍କାର ବିରୁଦ୍ଧରେ ଲଢ଼ିବାକୁ ହେବ । ସରଳ ଜୀବନଯାପନ କରିବାକୁ ହେବ । ବିନୋବାଙ୍କ ଏହି ଆହ୍ୱାନରେ ସେ ପ୍ରଭାବିତ ହୋଇ ୧୯୫୫ ମସିହାରେ ଭୂଦାନ ଆନ୍ଦୋଳନରେ ଯୋଗ ଦେଇଥିଲେ । ଭୂଦାନ କର୍ମୀ ଭାବେ ସେ ସାରା ଓଡିଶା ବୁଲିଲେ । ବିଶେଷ କରି ଅବିଭକ୍ତ

କୋରାପୁଟ ଜିଲ୍ଲାର ବିଭିନ୍ନ ଅଞ୍ଚଳ ବୁଲି ଜମିଦାରମାନଙ୍କଠାରୁ ଜମି ସଂଗ୍ରହ କରି ଭୂମିହୀନ ଗରିବ ଆଦିବାସୀମାନଙ୍କୁ ବଣ୍ଟନ କରିଥିଲେ ।

୧୯୫୦ ମସିହାରେ ନିଜ ଗ୍ରାମରେ ସେ ଗୋଟିଏ ମୌଳିକ ବିଦ୍ୟାଳୟ ସ୍ଥାପନ କରିଥିଲେ । ୧୯୬୦ ମସିହାରେ ବରୁଣା ଗ୍ରାମରେ ମଧ୍ୟ ଇଂରାଜୀ ବିଦ୍ୟାଳୟ ଏବଂ ବ୍ରାଞ୍ଚ ପୋଷ୍ଟ ଅଫିସ ପ୍ରତିଷ୍ଠାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

୧୯୬୫ ମସିହାରେ କନିକା ଅଞ୍ଚଳକୁ ବନ୍ୟା ଦାଉରୁ ରକ୍ଷା କରିବା ପାଇଁ ଖରସ୍ରୋତା ନଦୀ କୂଳେ କୂଳେ ଥିବା ଅସଂପୂର୍ଣ୍ଣ ମରହଟ୍ଟା ବନ୍ଧକୁ ପୂର୍ଣ୍ଣାଙ୍ଗ କରିବାକୁ ସେ ଏକ ପ୍ରତିନିଧି ଦଳର ନେତୃତ୍ୱ ନେଇଥିଲେ ।

ସରଳ ଓ ନିରାଡ଼ମ୍ବର ଜୀବନଯାପନ କରୁଥିବା ଗୋବିନ୍ଦବାବୁ କେବେ ନିଜକୁ ବିଜ୍ଞାପିତ କରିବାକୁ ଚାହୁଁନଥିଲେ । ଫଳରେ ତାଙ୍କର ଅନେକଗୁଡିଏ ଭଲକାର୍ଯ୍ୟ ସାଧାରଣ ଜନତାଙ୍କ ସମ୍ମୁଖକୁ ଆସି ପାରିନାହିଁ । ଶୈଶବଠାରୁ ଜୀବନର ଶେଷ ସମୟ ପର୍ଯ୍ୟନ୍ତ ମଧୁ–ତିକ୍ତ–କଷାୟ ପର୍ଯ୍ୟାୟ ମଧ୍ୟରେ ଗୋବିନ୍ଦବାବୁଙ୍କ ଜୀବନଧାରା ବହୁବାର ଆନ୍ଦୋଳିତ ହୋଇଥିଲେ ମଧ୍ୟ ଅବଦମିତ ହୋଇନାହିଁ । ସେ ଜୀବନ ପଥରେ ବହୁବାର ଘାତ–ପ୍ରତିଘାତର ଶିକାର ହୋଇଥିଲେ ବା ତାଙ୍କ ଅମାୟିକ ସଫଳତା ଓ ଗଭୀର ଆତ୍ମବିଶ୍ୱାସ ପାଖରେ ସବୁ କିଛି ହାର ମାନିଛି । ସେ ରାଜନୀତି ସହ ନିଃସ୍ୱାର୍ଥ ଜନସେବା ଓ ଶିକ୍ଷାନୁରାଗରେ ଅନୁରଣିତ ଜଣେ ଆଦର୍ଶ ମଣିଷ । ନିଜର ଜୀବନକୁ କେବଳ ଅନ୍ୟର ଉପକାର ନିମନ୍ତେ ବିତାଉଥିବା ଉତ୍ତୀର୍ଣ୍ଣ ସଂଗ୍ରାମୀ ୨୦୦୫ ମସିହା ଅଗଷ୍ଟ ୩୦ ତାରିଖରେ ଧରାପୃଷ୍ଠରୁ ବିଦାୟ ନେଇଛନ୍ତି ।

ସଂଗ୍ରାମୀ ଗୋବିନ୍ଦ ଚନ୍ଦ୍ର ସାହୁଙ୍କ ସାଧନା, ନିଷ୍ଠା, ତ୍ୟାଗ, ଏବଂ ଦେଶପ୍ରେମ ପାଇଁ ୧୯୭୧ ମସିହାରେ ଭାରତ ସରକାର ତାଙ୍କୁ ସ୍ୱାଧୀନତା ସଂଗ୍ରାମୀ 'ତାମ୍ରପତ୍ର' ପ୍ରଦାନ କରିଥିଲେ । ୧୯୯୭ ମସିହାରେ ମଧ୍ୟ ତାଙ୍କୁ ସୁବର୍ଣ୍ଣ ଜୟନ୍ତୀ ସମ୍ମାନରେ ସମ୍ମାନୀତ କରାଯାଇଛି । ଆମ ଦେଶର ନାଗରିକ ଏହି ସଂଗ୍ରାମୀଙ୍କୁ ଚିରଦିନ ପାଇଁ ମନେ ରଖିବେ ।

**ସହାୟକ ଗ୍ରନ୍ଥ**

୧) ପ୍ରତିଧ୍ୱନି– କନିକା ପୂଜ୍ୟପୂଜା ପରିଷଦ, ମୁଖପତ୍ର– ୨୦୨୦,

୨) ଉତ୍କଳ ପ୍ରସଙ୍ଗ– ସ୍ୱାଧୀନତା ବିଶେଷାଙ୍କ – ୨୦୧୮

୩) କୋରାପୁଟ ସହିଦ–ସଂଗ୍ରାମୀ– ଡଃ. କୃତ୍ତିବାସ ନାୟକ–୨୦୧୩

୪) ଉତ୍କଳ ପ୍ରସଂଗ– ଉତ୍କଳ ଦିବସ ବିଶେଷାଙ୍କ– ୨୦୧୯

ପୂର୍ବତନ ନିର୍ଦ୍ଦେଶକ
ଆକାଶବାଣୀ, ଜୟପୁର
ଘର ନଂ–ଭି.ଆଇ.ଏମ୍–୫୫, ଶୈଳଶ୍ରୀ ବିହାର
ଭୁବନେଶ୍ୱର–୭୫୧୦୨୧



# ଭାରତୀୟ ସଂସ୍କୃତିର ମୂଳଭିତ୍ତି : ଶ୍ରୀମଦ ଭଗବତ୍ ଗୀତା

ରମାକାନ୍ତ ନାୟକ

ବିଶ୍ୱର ପ୍ରାଚ଼ୀନତମ ସମୃଦ୍ଧ ଓ ଗୌରବମୟ ଭାରତୀୟ ସଂସ୍କୃତିର ଅବଦାନ ମାନବ ସମାଜ ପାଇଁ ଚିର ମହାର୍ଘ୍ୟ । ଏହାର ତାତ୍ପର୍ଯ୍ୟକୁ ଉପଲବ୍ଧି କରିବାକୁ ବିଶ୍ୱପ୍ରସିଦ୍ଧ ଐତିହାସିକ Will Durantଙ୍କର ବକ୍ତବ୍ୟ ପ୍ରଣିଧାନଯୋଗ୍ୟ । ସେ ଜଣେ ଭାରତୀୟ ନଥିଲେ କିମ୍ବା ନଥିଲେ ଜଣେ ଭାବପ୍ରବଣ ବ୍ୟକ୍ତିତ୍ୱ । ତେଣୁ ନିରପେକ୍ଷତା ଦୃଷ୍ଟିରୁ ମଧ୍ୟ ତାଙ୍କ ବକ୍ତବ୍ୟ ଅତ୍ୟନ୍ତ ଗୁରୁତ୍ୱ ବହନ କରେ । ଆମ ଯୁଗର ଏହି ବିଶିଷ୍ଟ ଐତିହାସିକ ତାଙ୍କର ଲୋକପ୍ରିୟ ପୁସ୍ତକ "The History of Civilisations"ରେ ଉଲ୍ଲେଖ କରିଛନ୍ତି, " India was the motherland of our race and Sanskrit is the mother of the European Languages. She was the mother of our Philosophy. xxx xxx. Mother India is in many ways the mother of all of us."ସମଗ୍ର ପୃଥିବୀର ସମସ୍ତ ସଭ୍ୟତାକୁ ବିଶ୍ଳେଷଣ କରିଥିବା ଏହି ଐତିହାସିକଙ୍କର ଉକ୍ତି ଭାରତୀୟ ସଂସ୍କୃତିର ମହନୀୟତାକୁ ପ୍ରତିପାଦନ କରେ ।

ଭାରତର ସାଂସ୍କୃତିକ ଇତିହାସ ଯେପରି ବିଧିବଦ୍ଧ ଓ ସୁସଂହତ ଭାବରେ ବିକଶିତ ହୋଇଛି, ସେପରି ଦୃଷ୍ଟାନ୍ତ ପୃଥିବୀରେ ଅନ୍ୟତ୍ର କେଉଁଠି ଦୃଷ୍ଟିଗୋଚର ହୁଏ ନାହିଁ । ମାନବ ସଭ୍ୟତାର ପ୍ରଥମ ବାକ୍ ଐଶ୍ୱର୍ଯ୍ୟ ହେଉଛି ଋକ୍‌ବେଦ । ବେଦର ଧାରଣାକୁ ଆଧାର କରି ଉପନିଷଦ, ମହାପୁରାଣ, ପୁରାଣ, ଧର୍ମଶାସ୍ତ୍ର ଇତ୍ୟାଦିର ଉନ୍ମେଷ



ଘଟିଥିଲା । ହିନ୍ଦୁଧର୍ମର ସର୍ବପ୍ରଧାନ ତିନିଶାସ୍ତ୍ର ଉପନିଷଦ, ବ୍ରହ୍ମସୂତ୍ର ଓ ଶ୍ରୀମଦ୍ ଭଗବତ୍ ଗୀତା ପ୍ରସ୍ଥାନତ୍ରୟୀ ଭାବରେ ଅଭିହିତ ଅଟନ୍ତି । ଉପନିଷଦକୁ ଉପଦେଶ ପ୍ରସ୍ଥାନ ବା ଶ୍ରୁତି ପ୍ରସ୍ଥାନ, ବ୍ରହ୍ମସୂତ୍ରକୁ ସୂତ୍ର ପ୍ରସ୍ଥାନ ବା ନ୍ୟାୟ ପ୍ରସ୍ଥାନ ଏବଂ ଶ୍ରୀମଦ ଭଗବତ୍ ଗୀତାକୁ ସାଧନା ପ୍ରସ୍ଥାନ ବା ସ୍ମୃତି ପ୍ରସ୍ଥାନ ଭାବରେ ବର୍ଣ୍ଣନା କରାଯାଏ । ଶ୍ରୀମଦ ଭଗବତ ଗୀତା ମହର୍ଷି ବାଦରାୟଣଙ୍କ ରଚ଼ିତ କାଳଜୟୀ ମହାଭାରତ ଅନ୍ତର୍ଗତ ଭୀଷ୍ମପର୍ବର ଅଂଶବିଶେଷ ଅଟେ । ଭାରତରେ

ପ୍ରବର୍ତ୍ତିତ ହିନ୍ଦୁ ଧର୍ମଗ୍ରନ୍ଥଗୁଡ଼ିକ ମଧ୍ୟରେ ଏହା ସର୍ବଶ୍ରେଷ୍ଠ ଭାବରେ ବିବେଚିତ ହୁଏ । ମୂଳତଃ ଶ୍ରୀମଦ ଭଗବଦ୍ ଗୀତା ସଂସ୍କୃତ ଭାଷାରେ ସଂକଳିତ ହୋଇଥିଲେ ମଧ୍ୟ ଅଦ୍ୟାବଧି ଏହା ବିଶ୍ୱର ପ୍ରାୟ ସମସ୍ତ ଭାଷାରେ ଅନୂଦିତ ହୋଇ ବହୁଳ ଆଦୃତି ଲାଭ କରିଛି । ଆଦିଗୁରୁ ଆଚାର୍ଯ୍ୟ ଶଙ୍କରାଚାର୍ଯ୍ୟ ଥିଲେ ଭଗବତ ଗୀତାର ସର୍ବପ୍ରଥମ ଭାଷ୍ୟକାର । ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ଆକୁମାରୀ ହିମାଚଳ ପରିବ୍ରାଜନ କରି ତାଙ୍କ ପ୍ରଚାର ଯୋଗୁଁ ଭଗବଦ୍ ଗୀତା ଅଭୂତପୂର୍ବ ଲୋକପ୍ରିୟତା ହାସଲ କରିଥିଲା । ତାଙ୍କ ରଚିତ ଗୀତା ମାହାତ୍ମ୍ୟ ଏବଂ ପଦ୍ମପୁରାଣରେ ମହାଦେବ ଶିବଙ୍କ ଦ୍ୱାରା ଦେବୀ ପାର୍ବତୀଙ୍କୁ କଥିତ ଭଗବତ ଗୀତା ଯୋଗୁଁ ଏହି ପବିତ୍ର ଗ୍ରନ୍ଥ ବହୁଳ ପ୍ରସାର ଲାଭ କରିଥିଲା । ଏଥିସହିତ ପ୍ରାଚୀନ ଯୁଗରୁ ଅଗଣିତ ପ୍ରାଜ୍ଞ ମନୀଷୀମାନଙ୍କ ଦ୍ୱାରା ତାହାର ଟୀକା ରଚିତ ହୋଇ ଯଥେଷ୍ଟ ପାଠକୀୟ ଆଦୃତି ଲାଭ କରିଛି । ସେମାନଙ୍କ ମଧ୍ୟରୁ ଅନ୍ୟତମ ଥିଲେ ରାମାନୁଚାର୍ଯ୍ୟ, ମାଧବାଚାର୍ଯ୍ୟ, ଶ୍ରୀଧର ସ୍ୱାମୀ, ବିଷ୍ଣୁ ସ୍ୱାମୀ, କେଶବ କାଶ୍ମିରୀ । ଶ୍ରୀମଦ ଭଗବଦ୍ ଗୀତାକୁ ସମଗ୍ର ଉପନିଷଦର ସାରାଂଶ ଏବଂ ଭଗବାନ ଶ୍ରୀକୃଷ୍ଣଙ୍କର ମୁଖନିସୃତ ବାଣୀ ଭାବରେ ଗ୍ରହଣ କରାଯାଏ ।

ପ୍ରାୟ ସାତହଜାର ବର୍ଷ ପୂର୍ବେ ମାର୍ଗଶିର ମାସ ଶୁକ୍ଳପକ୍ଷ ଏକାଦଶୀ ତିଥି ରବିବାର ଦିବସର ପୁଣ୍ୟ ଲଗ୍ନରେ ପରମପ୍ରଭୁ ଶ୍ରୀକୃଷ୍ଣ ମଧ୍ୟମ ପାଣ୍ଡବ ଅର୍ଜୁନଙ୍କ ସମ୍ମୁଖରେ କୁରୁକ୍ଷେତ୍ର ରଣାଙ୍ଗନରେ ଭଗବଦ୍ ଗୀତାର ଅବତାରଣା କରିଥିଲେ ଏବଂ ଏହାକୁ ମହାରାଜା ଧୃତରାଷ୍ଟ୍ରଙ୍କ ନିକଟରେ ସଂଜୟ ଉପସ୍ଥାପନ କରିଥିଲେ । ଏହି ପବିତ୍ର ଦିବସକୁ ହିନ୍ଦୁ ପରଂପରାରେ ଗୀତା ଜୟନ୍ତୀ ଭାବରେ ପାଳନ କରାଯାଇଆସୁଛି । ମହାଭାରତ ଯୁଦ୍ଧର ଅବ୍ୟବହିତ ପୂର୍ବରୁ ପାଣ୍ଡବ ବୀର ଅର୍ଜୁନ ଯେତେବେଳେ ନିଜର ଜ୍ଞାତି ଓ ପ୍ରିୟଜନଙ୍କ ସହିତ ସମରରେ ବ୍ୟାପୃତ ହେବାକୁ ଅନିଚ୍ଛା ପ୍ରକାଶ କଲେ ସେତେବେଳେ ଯେଉଁ ବକ୍ତବ୍ୟ ମାଧ୍ୟମରେ ପ୍ରଭୁ ଶ୍ରୀକୃଷ୍ଣ ତାଙ୍କ ଚେତନାରେ ସାମଗ୍ରିକ ପରିବର୍ତ୍ତନ ସଂପନ୍ନ କରିଥିଲେ, ତାହା ହିଁ ଭଗବଦ୍ ଗୀତାର ସାରମର୍ମ । ଈଶ୍ୱରଙ୍କ ମୁଖନିସୃତ ଏହି ପରମଶାସ୍ତ୍ରର ମୋଟ ଶ୍ଳୋକ ସଂଖ୍ୟା ସାତଶହ । ସେଥିମଧ୍ୟରୁ ଶ୍ରୀକୃଷ୍ଣଙ୍କ କଥାମୃତର ଶ୍ଳୋକ ସଂଖ୍ୟା ପାଞ୍ଚଶହ ଚଉସ୍ତରୀ, ଅର୍ଜୁନଙ୍କ ନିବେଦନର ଶ୍ଳୋକ ସଂଖ୍ୟା ପଞ୍ଚାଅଶୀ, ସଞ୍ଜୟଙ୍କ ମୁଖନିସୃତ ଶ୍ଳୋକ ସଂଖ୍ୟା ଚାଳିଶ ହୋଇଥିବା ବେଳେ ଧୃତରାଷ୍ଟ୍ରଙ୍କର ବକ୍ତବ୍ୟ ଗୋଟିଏ ମାତ୍ର ଶ୍ଳୋକରେ ଏହି ଦିବ୍ୟଶାସ୍ତ୍ରର ସୌଷ୍ଠବ ଗଠିତ ।

ବିଭିନ୍ନ ଦୃଷ୍ଟିକୋଣରୁ ବେଦ ଓ ଭଗବଦ୍ ଗୀତା ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ଉଭୟ ଶାସ୍ତ୍ରର ମୂଳ ଆଭିମୁଖ୍ୟ ହେଉଛି ନୈତିକତା, ଧର୍ମବିଶ୍ୱାସ ଓ ସୁସ୍ଥ ସମାଜ ଗଠନ ସମ୍ବନ୍ଧରେ ଦିଗ୍‌ଦର୍ଶନ ପ୍ରଦାନ କରିବା । ତେବେ ଉଭୟ ମଧ୍ୟରେ ଅସାମଞ୍ଜସ୍ୟ ହେଉଛି ଶ୍ରୀମଦ ଭଗବଦ୍ ଗୀତା ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରଦତ୍ତ କଳ୍ପନାପ୍ରସୂତ ଧର୍ମୋପଦେଶ ହୋଇଥିବା ବେଳେ ବେଦ ହିଁ ଈଶ୍ୱରଙ୍କୁ ସଭକ୍ତି ଅନୁରକ୍ତି ନିବେଦନ କରିବା ପାଇଁ ଉଦ୍ଦିଷ୍ଟ ଜୀବନ୍ତ ମନ୍ତ୍ରମାଳା । ପ୍ରତ୍ୟକ୍ଷ ଭାବରେ ବେଦ ଧର୍ମବିଶ୍ୱାସ ଓ ପରଂପରା କୈନ୍ଦ୍ରିକ ହୋଇଥିବାବେଳେ ଭଗବଦ୍ ଗୀତା ବ୍ୟକ୍ତିଗତ ଚରିତ୍ର ଗଠନ ଓ ସର୍ବଶକ୍ତିମାନ ଈଶ୍ୱରଙ୍କ ସହିତ ସଂଯୋଗ ସ୍ଥାପନ କରିବା ପାଇଁ ଅଭିପ୍ରେତ ଏକ ବର୍ଣ୍ଣନାତ୍ମକ ଗ୍ରନ୍ଥ ଅଟେ । କେତେକ ଧର୍ମନୈତିକ ମନ୍ତ୍ର ଓ ଘଟଣାବଳୀ ସମ୍ବଳିତ ବେଦ ଅପରିବର୍ତ୍ତିତ ସ୍ୱରୂପରେ ପିଢ଼ି ପରେ ପିଢ଼ିକୁ ମୌଖିକ ଭାବରେ ସଞ୍ଚାରଣ ହୋଇ ଆସିଥିଲା ଏବଂ ଲିଖନ ପ୍ରକ୍ରିୟାର ବିକାଶ ପରେ ତାହା ସଂସ୍କୃତ ଭାଷାରେ ଲିପିବଦ୍ଧ ହୋଇଥିଲା । କିନ୍ତୁ ବେଦର ଅନ୍ୟ ଏକ ରୂପାନ୍ତର ଭଗବଦ୍ ଗୀତା ପ୍ରଭୁ ଶ୍ରୀକୃଷ୍ଣଙ୍କର ଉଚ୍ଚାରିତ ବାଣୀ ଭାବରେ ବିବେଚିତ ହୁଏ । ବେଦ ଓ ଉପନିଷଦରେ ଗୂଢ଼ ଜ୍ଞାନକୁ ହୃଦୟଙ୍ଗମ କରିବା ପାଇଁ ସଯତ୍ନ ଅଧ୍ୟୟନର ପ୍ରୟୋଜନ ରହିଛି । ସେଥିରେ ପରମପ୍ରଭୁଙ୍କୁ ବିବିଧ ବୈଷମ୍ୟପୂର୍ଣ୍ଣ ଦୃଷ୍ଟିକୋଣର ଏକ ସଶ୍ଳେଷଣାତ୍ମକ ସ୍ୱରୂପ ଭାବରେ ଚିତ୍ରଣ କରାଯାଇଥିବା ବେଳେ, ଭଗବଦ୍ ଗୀତାରେ ସ୍ୱୟଂ ଶ୍ରୀକୃଷ୍ଣ କିପରି ବେଦ ବର୍ଣ୍ଣିତ ସକଳ ଶକ୍ତି ଓ ଗୁଣାବଳୀର ଐକ୍ୟ କୈନ୍ଦ୍ରୀକ ଦୃଷ୍ଟାନ୍ତ ତାହାର ଇଙ୍ଗିତ ପ୍ରଦାନ କରାଯାଇଛି । ସେଥିପାଇଁ ଗୀତାକୁ ଗୀତୋପନିଷଦ ବା ସମସ୍ତ ଉପନିଷଦର ସାରତତ୍ତ୍ୱ ଭାବରେ ଅଭିହିତ କରାଯାଏ ।

ସମସ୍ତ ପୁରାଣ ଓ ଉପନିଷଦ ମଧ୍ୟ ଗୀତାକୁ ବୈଦିକ ଦର୍ଶନର ସାରମର୍ମ ଭାବରେ ସ୍ୱୀକାର କରନ୍ତି । ଗୀତାର ଅନ୍ତର୍ନିହିତ ଦର୍ଶନ ଭାରତୀୟ ପରଂପରା, ପ୍ରାଚୀନ ଶାସ୍ତ୍ର, ପ୍ରାଚୀନ ସାହିତ୍ୟ, ପୁରାଣ ଓ କିମ୍ବଦନ୍ତୀରେ ବହୁଳ ଭାବରେ ବିମ୍ବିତ ହୁଏ । ସନାତନ ଧର୍ମର ନିଗୂଢ଼ ନିର୍ଯ୍ୟାସ ବହନ କରିଥିବା ଶ୍ରୀମଦ ଭଗବଦ୍ ଗୀତା ବିଶ୍ୱ ପାଇଁ ମାନବୀୟ ମୂଲ୍ୟବୋଧର ପ୍ରାଚୀନତମ ଉଦ୍‌ବୋଧନୀ ଭାବରେ ପରିଚିତ ହୁଏ ।

ପ୍ରାଚୀନ ଯୁଗରେ ମାନବଜାତିର ଇତିହାସ ଭାବରେ ବିଦିତ ମହାଭାରତ ମହାକାବ୍ୟରେ ଭଗବଦ୍ ଗୀତାକୁ ପଞ୍ଚମ ବେଦ ଭାବରେ ପ୍ରତିପାଦିତ କରାଯାଇଛି । ସଂସାରର ଘୋର ଜଞ୍ଜାଳ ମଧ୍ୟରେ ସମଗ୍ର ଜୀବନର ଅର୍ଥ, ଆଭିମୁଖ୍ୟ ଓ ମର୍ମକୁ ଅତି ସଂକ୍ଷିପ୍ତ ଭାବରେ ଏହି ପରମ ଶାସ୍ତ୍ରରେ ଯେପରି ଅବତାରଣା କରାଯାଇଛି, ସେପରି ନମୂନା ଅନ୍ୟ କୌଣସି ଧର୍ମଶାସ୍ତ୍ରରେ ଉପଲବ୍ଧି ହେବା ବିରଳ । ଦିବ୍ୟ ଜୀବନଶୈଳୀ, ସମ୍ୟକ ଜ୍ଞାନ, ଅଟଳ ବିଶ୍ୱାସ, ନିର୍ମଳ ଭକ୍ତି, ସଂପୂର୍ଣ୍ଣ ଆତ୍ମସମର୍ପଣ, ସଂସାରର ମୋହ ଏବଂ ଅହଂରୁ ବିମୁକ୍ତି ସଂପର୍କିତ ବକ୍ତବ୍ୟ ଯେପରି ପ୍ରାଞ୍ଜଳ ଓ ପ୍ରଭାବଶାଳୀ ଢଙ୍ଗରେ ଅଭିବ୍ୟକ୍ତ ହୋଇଛି ତାହାର ପଟାନ୍ତର ନାହିଁ । ସ୍ଥୂଳକର୍ମ ଓ କର୍ମହୀନ ତୀବ୍ର ନିଷ୍କ୍ରିୟତା ଏବଂ କର୍ମଯୋଗ ତଥା ସତ୍‌କର୍ମର ଭୂମିକା ସଂପର୍କରେ ଜ୍ଞାନ ଆହରଣ କରିବା ସାଂପ୍ରତିକ ସମାଜରେ ମଣିଷ ଜୀବନ ପାଇଁ ଅତ୍ୟନ୍ତ ପ୍ରାସଙ୍ଗିକ । ଭଗବଦ୍ ଗୀତା ଅନୁଯାୟୀ ଏହି ସ୍ଥୂଳ ଜଗତ ଅବାସ୍ତବ, ଅଳୀକ ଓ ଅସ୍ଥିର । ଭଗବଦ୍ ସତ୍ତା ସହିତ ଆତ୍ମାର ସଂଯୋଗ ସ୍ଥାପନ କରିବାରେ ଅଷ୍ଟାଦଶ ଯୋଗ ସମ୍ବଳିତ ଏହି ଗ୍ରନ୍ଥ ଏକ ଉପାଦେୟ ମାର୍ଗଦର୍ଶିକା କହିଲେ ଅତ୍ୟୁକ୍ତି ହେବ ନାହିଁ । ଶାସ୍ତ୍ରଜ୍ଞମାନଙ୍କ ମତରେ ଭଗବତ ଗୀତାର ଗୁରୁତ୍ୱପୂର୍ଣ୍ଣ ସତ୍ୟ ହେଉଛି – ପ୍ରତ୍ୟେକ ବ୍ୟକ୍ତି ନିଜର କର୍ତ୍ତବ୍ୟ ବା ସ୍ୱଧର୍ମାଚରଣ ଉଚିତ୍ ମାର୍ଗରେ ସାଧନ କରିବା ଉଚିତ୍ । ଦ୍ୱିତୀୟ ସତ୍ୟ ହେଉଛି ପ୍ରତ୍ୟେକ ମନୁଷ୍ୟର ଏକ ଲୁକ୍କାୟିତ ଆତ୍ମସତ୍ତା ରହିଛି, ଯାହା ତା'ର ବାହ୍ୟ ସତ୍ତାଠାରୁ ସଂପୂର୍ଣ୍ଣ ପୃଥକ । ସେହି ଅନ୍ତଃସତ୍ତାକୁ ମନୁଷ୍ୟ ଉପଲବ୍ଧି କରିବା ଉଚିତ । ତୃତୀୟ ସତ୍ୟ ହେଉଛି ଈଶ୍ୱର ହିଁ ଏକମାତ୍ର ସର୍ବଶକ୍ତିମାନ୍ । ଏହି ତିନିଟି ସତ୍ୟକୁ ଯଥାକ୍ରମେ ଗୁହ୍ୟ, ଗୁହ୍ୟତର ଓ ଗୁହ୍ୟତମ ଜ୍ଞାନ ଭାବରେ ବିବେଚନା କରାଯାଏ ।

ଶାକ୍ୟମୁନୀ ଗୌତମ ବୁଦ୍ଧଙ୍କର ମାନବ ଜାତିର ଦୁଃଖ ବିମୋଚନ ଉଦ୍ଦେଶ୍ୟରେ ବାର୍ତ୍ତା ଥିଲା, ଆର୍ଯ୍ୟ ଚତୁଃର୍ସତ୍ୟ, ଯାହାର ଆଦ୍ୟ ଉକ୍ତି ଥିଲା କାମନା ହିଁ ଦୁଃଖର କାରଣ । କିନ୍ତୁ ତାଙ୍କ ଆବିର୍ଭାବର ସହସ୍ର ସହସ୍ର ବର୍ଷ ପୂର୍ବରୁ ଶ୍ରୀମଦ ଭଗବତ ଗୀତାରେ ଘୋଷିତ ହୋଇଥିଲା– ''ଧ୍ୟାୟତୋ ବିଷୟାନଂପୁସଃ ସଙ୍ଗସ୍ତେଷୁପଜାୟତେ/ ସଙ୍ଗାସଂଜାୟତେ କାମଃ କାମାକ୍ରୋଧୋଃଭିଜାୟତେ ।। କ୍ରୋଧାଭବତି ସଂମୋହଃ ସଂମୋହାସ୍ମୃତି ବିଭ୍ରମଃ/ସ୍ମୃତିଭ୍ରଂଶାଦ୍‌ବୁଦ୍ଧିନାଶୋ ବୁଦ୍ଧି ନାଶାପ୍ରଣଶ୍ୟତି ।। ଅର୍ଥାତ୍ ଇନ୍ଦ୍ରିୟମାନଙ୍କ ଯୋଗୁଁ ମନୁଷ୍ୟର ବିଷୟ ପ୍ରତି ଆସକ୍ତି ଆସେ । ଆସକ୍ତିରୁ କାମନା ଓ କାମନା ଫଳପ୍ରଦ ହୋଇ ନପାରିଲେ କ୍ରୋଧ ଏବଂ କ୍ରୋଧରୁ ମୋହ ଓ ମୋହରୁ ସ୍ମୃତି ବିଭ୍ରମ ସୃଷ୍ଟି ହୋଇ ବୁଦ୍ଧିନାଶ ହୁଏ । ଭଲମନ୍ଦର ବିଚାର କରିବାର ଶକ୍ତି ହରାଇ ମନୁଷ୍ୟ ଦୁଃଖ ଯନ୍ତ୍ରଣାର ଶିକାର ହୁଏ । ଶ୍ରୀମଦ୍ ଭଗବଦ୍ ଗୀତାର ଏହି ବାଣୀକୁ ଅନୁସରଣ କରି ସନ୍ଥ ତୁଳସୀ ଦାସ ତାଙ୍କ ରଚିତ 'ରାମ ଚରିତ ମାନସ' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି, ''ଇନ୍ଦ୍ରିୟ ଦ୍ୱାର ଝରକାଖାନା/ତହଁ ତହଁ ସୁର ବୈଠଦ୍ ଥାନା/ ଆୱତ ଦେଖହ ବିଷୟ ବୟାରୀ/ତେ ହଠତେ ଦେ କପାଟ ଉଘାରୀ'' ଅର୍ଥାତ୍ ଇନ୍ଦ୍ରିୟମାନେ ଏ ଦେହରୂପୀ ପୁରର ଝରକା ସମାନ । ଇନ୍ଦ୍ରିୟମାନଙ୍କର ସ୍ୱ ସ୍ୱ ଦେବତା ଏହି ଝରକା ନିକଟରେ ଅବସ୍ଥାନ କରିଥାନ୍ତି । ଯେତେବେଳେ ଇନ୍ଦ୍ରିୟମାନେ ବିଷୟ ସଂସ୍ପର୍ଶରେ ଆସନ୍ତି, ଏହି ଦେବତାମାନେ ହଠ ଦେଖି ଦରୱାଜା ଖୋଲିଦିଅନ୍ତି ଓ ମନୁଷ୍ୟ ବିଷୟ ସେବନ କରି ଦୁଃଖୀ ହୁଏ । ଭଗବଦ୍ ଗୀତା କିପରି ଭାରତୀୟ ଆଧ୍ୟାତ୍ମିକ ଚେତନାକୁ ଗଭୀର ଭାବରେ ପ୍ରଭାବିତ କରିଆସିଛି ଏଥିରୁ ଅନୁମେୟ ।

ସାଂପ୍ରତିକ ସମାଜରେ ପ୍ରଚଳିତ ଧର୍ମ ଅର୍ଥରେ ଭଗବଦ୍ ଗୀତା କେବଳ ମାତ୍ର ଏକ ଧର୍ମଗ୍ରନ୍ଥ ନୁହେଁ, ଏହା ଏକ ଆଧ୍ୟାତ୍ମିକ ଗ୍ରନ୍ଥ । ବିଷାଦଗ୍ରସ୍ତ ମାନବଜାତିର ବିଷାଦ ମୋଚନ ପାଇଁ ଅଭିପ୍ରେତ ଏହି ମହାନ୍‌ଗ୍ରନ୍ଥ ଯୁଗ ଯୁଗ ଧରି ଅସୀମ ପ୍ରେରଣା ଓ ଦିଗ୍‌ଦର୍ଶନ ପ୍ରଦାନ କରିଆସିଛି ।

ମନୁଷ୍ୟ ଜୀବନକୁ ସାର୍ଥକ, ସୁନ୍ଦର କରି ଗଢି ତୋଳିବାରେ ଏହାର ଅବଦାନ ଅତୁଳନୀୟ । ଏହା ମନୁଷ୍ୟ ମଧ୍ୟରେ ଆତ୍ମଚିନ୍ତନର ପରିବେଶ ସୃଷ୍ଟି କରେ । ସଂକ୍ଷିପ୍ତରେ କହିଲେ ଏହାର ସାରବତ୍ତା ହେଉଛି ସାମବେଦ ଅନ୍ତର୍ଗତ ଛାନ୍ଦୋଗ୍ୟ ଉପନିଷଦୀୟ ଉକ୍ତି, ''ତ୍ୱଂ ତତ୍ତ୍ୱମସି'' ଉପରେ ପର୍ଯ୍ୟବସିତ । ଅଷ୍ଟାଦଶ ଯୋଗ ବା ଅଧ୍ୟାୟ ବିଶିଷ୍ଟ ଏହି ପରମଗ୍ରନ୍ଥର ପ୍ରଥମ ଛଅଟି ଅଧ୍ୟାୟ ତ୍ୱଂ ବା ବ୍ୟକ୍ତି, ପରବର୍ତ୍ତୀ ଛଅଟି ଅଧ୍ୟାୟ ତତ୍ ଓ ଅନ୍ତିମ ଛଅଟି ଅଧ୍ୟାୟ ତତ୍ତ୍ୱମସି ବା ତତ୍ ଓ ତ୍ୱଂ ମଧ୍ୟରେ ସାମଞ୍ଜସ୍ୟର ବର୍ଣ୍ଣନା କରାଯାଇଛି ।

ସଂଶୟ ମନରେ ପ୍ରଶ୍ନ ଆସେ ଅନେକ । ତେବେ ଦ୍ୱନ୍ଦ୍ୱ ଦୂର କରିବାକୁ ଯାଇ ଭଗବାନ ଶ୍ରୀକୃଷ୍ଣ ସଖା ତଥା ଶିଷ୍ୟ ଅର୍ଜୁନଙ୍କୁ ମାଧ୍ୟମ କରି ମାନବ ଜାତି ଉଦ୍ଦେଶ୍ୟରେ ଯେଉଁ ଦୁର୍ମୂଲ୍ୟ ସନ୍ଦେଶ ଦେଇଛନ୍ତି, ତାହା ଅନନ୍ତ ଯୁଗ ପର୍ଯ୍ୟନ୍ତ କାଳଜୟୀ ଉଦ୍‌ବୋଧନୀ ଭାବରେ ପରିଗଣିତ ହେଉଥିବ । ମନୁଷ୍ୟ ଆଧ୍ୟାତ୍ମିକ ମାର୍ଗରେ କେତେଦୂର ଅଗ୍ରସର ହୋଇଛି ନିଜକୁ ନିଜେ ମୂଲ୍ୟାୟନ କରିବାର ପଦ୍ଧତି ଏଥିରେ ସନ୍ନିବେଶିତ ହୋଇଛି । ସଂସାରର ମାୟାବନ୍ଧନ ଭିତରେ ମଣିଷ ସୁଖ ଦୁଃଖ, ଅନୁକୂଳ ଓ ପ୍ରତିକୂଳ ପରିସ୍ଥିତିରେ କିପରି ପ୍ରତିକ୍ରିୟା ପ୍ରକାଶ କରୁଛି, ସେହି କଷଟି ପଥରରେ ନିଜକୁ ପରଖିବାର ମାର୍ଗ ଦର୍ଶାଯାଇ ଉଲ୍ଲେଖ ଅଛି, ''ଦୁଃଖେଷ୍ୱନୁଦ୍ୱିଗ୍ନମନାଃ ସୁଖେଷୁ ବିଗତ ସ୍ପୃହଃ / ବୀତରାଗଭୟ କ୍ରୋଧଃ ସ୍ଥିତଧୀ ର୍ମୁନିରୁଚ୍ୟତେ ।'' ଯିଏ ଦୁଃଖରେ ବା ବିପର୍ଯ୍ୟୟ ସମୟରେ ଭାଙ୍ଗିପଡ଼େ ନାହିଁ, ସାଂସାରିକ ଭୋଗ ସୁଖରେ ସ୍ପୃହା ରଖିନଥାଏ ଏବଂ ଯିଏ ଭୟ, କ୍ରୋଧ ଓ ଆସକ୍ତିରୁ ମୁକ୍ତ ରହିପାରିଛି, ସେହି ମନନଶୀଳ ମନୁଷ୍ୟକୁ ସ୍ଥିର ବୁଦ୍ଧି ବା ସ୍ଥିତପ୍ରଜ୍ଞ କୁହାଯାଏ ।

ବାସ୍ତବରେ ଅନେକ ସମସ୍ୟାର ସମାଧାନ ହେଉଛି ଜୀବନ ଏବଂ ବାସ୍ତବ ଜ୍ଞାନ ଦ୍ୱାରା ସକଳ ସମସ୍ୟାର ସମାଧାନ ସଂଭବପର ହୋଇଥାଏ । ସମସ୍ୟାର ଚାପରେ ଆତଙ୍କିତ ହେବା ପରିବର୍ତ୍ତେ ତାହାକୁ ଆହ୍ୱାନ ଭାବରେ ଗ୍ରହଣ କରି ସମାଧାନର ପନ୍ଥା ଅନ୍ୱେଷଣ ତଥା ସମସ୍ୟାକୁ ଯଥାର୍ଥ ସୁଯୋଗରେ ରୂପାନ୍ତରିତ କରିବାର କୌଶଳ ଏବଂ ସେଥି ସକାଶେ ଅନୁପ୍ରେରଣାରେ ସମୃଦ୍ଧ ଏହି ପରମ ଶାସ୍ତ୍ର । ମହାତ୍ମା ଗାନ୍ଧୀ କହୁଥିଲେ, ''ସେ ଯେତେବେଳେ କୌଣସି ଦ୍ୱନ୍ଦ୍ୱର ସମ୍ମୁଖୀନ ହେଉଥିଲେ, ସେତେବେଳେ ସେ ଭଗବତ୍ ଗୀତାର ଯେକୌଣସି ପୃଷ୍ଠା ଉନ୍ମୋଚନ କରି ସମାଧାନର ପନ୍ଥା ଆବିଷ୍କାର କରିପାରୁଥିଲେ । ସମଗ୍ର ବିଶ୍ୱ ପାଇଁ ଗାନ୍ଧିଜୀ ଥିଲେ ଏକ ଆଦର୍ଶ । ସେ ଶାଶ୍ୱତ, ଚିରନ୍ତନ । ସେ କେବଳ ମାତ୍ର ଜଣେ ବ୍ୟକ୍ତି ନଥିଲେ । ସେ ଥିଲେ ଆଦର୍ଶ ବିଚାରଧାରାର ମୂର୍ତ୍ତିମନ୍ତ ପ୍ରତୀକ । ଇସଲାମ ଧର୍ମର ପବିତ୍ର କୋରାନ୍ ଓ ଖ୍ରୀଷ୍ଟଧର୍ମର ବାଇବେଲ ଭଳି ଗାନ୍ଧୀ ହିନ୍ଦୁଧର୍ମର ମୂଳତତ୍ତ୍ୱକୁ ବୁଝିବା ପାଇଁ ଶ୍ରୀମଦ ଭଗବତ୍ ଗୀତାକୁ ସର୍ବଶ୍ରେଷ୍ଠ ସ୍ଥାନ ଦେଇଥିଲେ । ଗୀତାକୁ ସେ 'ବିଶ୍ୱମାତା' ଭାବରେ ଚିତ୍ରଣ କରୁଥିଲେ । ତାଙ୍କ ମତରେ ''ଯିଏ ଥରେ ଗୀତାମୃତର ସ୍ୱାଦ ଚାଖିଛି, ସେ ତାକୁ ସହଜରେ ଛାଡ଼ିପାରିବ ନାହିଁ ଏବଂ ଏହାଦ୍ୱାରା ବ୍ରହ୍ମ ନିର୍ବାଣ ଓ ମୋକ୍ଷଲାଭ କରିପାରିବ । ମୁଁ ପ୍ରତ୍ୟେକ ବିଦ୍ୟାର୍ଥୀଙ୍କୁ କହିବି ହିନ୍ଦୁ ଧର୍ମକୁ ବୁଝିବାକୁ ହେଲେ ପ୍ରତ୍ୟେକ ଦିନ ଗୀତା ଅଧ୍ୟୟନ କରନ୍ତୁ । ଜୀବନର ସମସ୍ତ ପ୍ରଶ୍ନର ଉତ୍ତର ଅଷ୍ଟାଦଶ ଅଧ୍ୟାୟ ବିଶିଷ୍ଟ ଏହି ଜ୍ଞାନ ଗ୍ରନ୍ଥରେ ରହିଛି ।'' ଏହି ପରିପ୍ରେକ୍ଷୀରେ ଜଣେ ମିସନାରୀ ଗାନ୍ଧୀଙ୍କୁ ପ୍ରଶ୍ନ କରିଥିଲେ ଯେ ଭାରତ ଭଳି ଆଧ୍ୟାତ୍ମିକ ପରଂପରାରେ ସମୃଦ୍ଧ ଦେଶରେ କାହିଁକି ଅଧିକାଂଶ ଲୋକ ନିଜ ଧର୍ମ ସଂପର୍କରେ ଏତେ ଅନଭିଜ୍ଞ ? ଏହି ପ୍ରସଙ୍ଗରେ ସେ ଦୁଇଟି ସର୍ବେକ୍ଷଣର ଫଳାଫଳ ଉପସ୍ଥାପନ କରିଥିଲେ । ପ୍ରଥମ ସର୍ଭେରେ ଶହେଜଣ ହିନ୍ଦୁଙ୍କ ମଧ୍ୟରୁ ମାତ୍ର ଚାରିଜଣ ଗୀତା ପଠନ କରିଛନ୍ତି ବୋଲି ଗାନ୍ଧୀ ସ୍ୱୀକାର କରିଥିଲେ । ତାଙ୍କ ମନ୍ତବ୍ୟ ଥିଲା, ''ଗୀତା ରୂଢ଼ିବାଦ ଓ ଅନ୍ଧବିଶ୍ୱାସରୁ ମୁକ୍ତ ସରଳ ଭାଷାରେ ରଚିତ ଜୀବନଶାସ୍ତ୍ର । ମୋର ସ୍ମୃତିଶକ୍ତି ଦୁର୍ବଳ, ନହେଲେ ମୁଁ ସଂପୂର୍ଣ୍ଣ ଗୀତାକୁ ମୁଖସ୍ଥ କରିଥାଆନ୍ତି ଏବଂ ଏବେ ବି ଏହି ମହାନ୍ ଗ୍ରନ୍ଥକୁ ସଂପୂର୍ଣ୍ଣ ବୁଝିପାରିଛି ବୋଲି ଦାବୀ କରିପାରିବି ନାହିଁ ।''

ଉପନିଷଦୀୟ ଦର୍ଶନର ଔଜ୍ଜ୍ୱଲ୍ୟରେ ଭଗବତ୍ ଗୀତା କିପରି ଉଦ୍ଭାସିତ, ତାହାର ଏକ ଦୃଷ୍ଟାନ୍ତ ଉପସ୍ଥାପନ କଲେ ପ୍ରାସଙ୍ଗିକ ହେବ । ଗୁରୁ ଯାଜ୍ଞବଲ୍କ୍ୟ ଓ ଶିଷ୍ୟ ଜନକଙ୍କ ମଧ୍ୟରେ କଥୋପକଥନ କାଳରେ ଶିଷ୍ୟଙ୍କର ପ୍ରଶ୍ନ ଥିଲା,

''ମୁଁ କେଉଁଠାରୁ ଆଲୋକ ପାଇବି ?'' ଗୁରୁଙ୍କର ଉତ୍ତର ଥିଲା, ''ସୂର୍ଯ୍ୟ'' । ପ୍ରଶ୍ନ ଥିଲା, ''ଯଦି ସୂର୍ଯ୍ୟ ଅସ୍ତମିତ ?'' ''ତେବେ ଚନ୍ଦ୍ରଠାରୁ ଆଲୋକ ପାଇବ'' । ''ଯଦି ଚନ୍ଦ୍ର ଅଦୃଶ୍ୟ ? ''ତେବେ ଅଗ୍ନିଠାରୁ ଆଲୋକ ଉପଲବ୍ଧ ହେବ ।'' ପ୍ରଶ୍ନ ଥିଲା ''ଯଦି ଅଗ୍ନି ନିର୍ବାପିତ ? ''ତେବେ ବାକ୍ ବା ଶବ୍ଦରୁ ଆଲୋକ ମିଳିବ ।'' ପରବର୍ତ୍ତୀ ପ୍ରଶ୍ନ ଜନକଙ୍କର ଥିଲା ''ଯଦି ସୂର୍ଯ୍ୟ ଅସ୍ତମିତ, ଚନ୍ଦ୍ର ଅଦୃଶ୍ୟ, ଅଗ୍ନି ନିର୍ବାପିତ ଓ ବାକ୍‌ରୁଦ୍ଧ ତେବେ କେଉଁଠାରୁ ଆଲୋକ ମିଳିବ ?'' ଏହି ପ୍ରଶ୍ନର ମହତ୍ତର ଉତ୍ତର ଥିଲା ଗୁରୁ ଯାଜ୍ଞବଲ୍‌କ୍ୟଙ୍କର, ''ଆତ୍ମାଠାରୁ ଆଲୋକ ପାଇବ । ଆତ୍ମଜ୍ଞାନ ସର୍ବଶ୍ରେଷ୍ଠ ଜ୍ଞାନ ।'' ଏହି ଦର୍ଶନକୁ ଆଧାର କରି ଭଗବତ ଗୀତାରେ ଅଛି, '' ନ ହି ଜ୍ଞାନେନ ସଦୃଶଂ ପବିତ୍ରମିହ ବିଦ୍ୟତେ/ତସ୍ୱୟଂ ଯୋଗସଂ ସିଦ୍ଧଃ କାଲେନାତ୍ମନି ବିନ୍ଦତି ।'' ଅର୍ଥାତ୍ ଆତ୍ମଜ୍ଞାନ ପରି ପବିତ୍ର କାରକ ଏ ଜଗତରେ ଆଉ କିଛି ନାହିଁ । ସେହି ଜ୍ଞାନ ସ୍ୱୟଂ ଯୋଗସିଦ୍ଧ ଅବଶ୍ୟ ନିଜ ଅନ୍ତର ମଧ୍ୟରେ ଅନୁଭବ କରିପାରିବ । ପୁନଶ୍ଚ ଉଲ୍ଲେଖ ଅଛି, ''ଜ୍ଞାନେତୁ ସଦ୍‌ଜ୍ଞାନଂ ୟେଷାଂ ନାଶିତମାତ୍ମନଃ/ତେଷାମାଦିତ୍ୟବଜ ଜ୍ଞାନଂ ପ୍ରକାଶୟତି ତତ୍ପରମ୍ ।'' ଆତ୍ମଜ୍ଞାନ ଉଦୟ ହେଲେ ଯେଉଁମାନଙ୍କର ଅଜ୍ଞାନତା ବିନିଷ୍ଟ ହୋଇଯାଏ, ସୂର୍ଯ୍ୟ ଯେପରି ସମସ୍ତ ପ୍ରକାଶ କରିଥାଆନ୍ତି, ସେପରି ସେମାନଙ୍କର ଆତ୍ମଜ୍ଞାନ ଉଦୟରେ ତାଙ୍କ ନିକଟରେ ପରମବ୍ରହ୍ମ ପ୍ରକାଶିତ ହୋଇଥାଆନ୍ତି ।'' ଏହି ପ୍ରସଙ୍ଗରେ ସ୍କନ୍ଧ ପୁରାଣରେ ଉଲ୍ଲେଖ ଅଛି, ''ଆତ୍ମଜ୍ଞାନୀୟ ଯା ଭକ୍ତିଃ କ୍ରିୟତେ ସା ତୁ ସାତ୍ତ୍ୱିକୀ'' ଅର୍ଥାତ୍ ଆତ୍ମଜ୍ଞାନ ପାଇଁ ଯେଉଁ ଭକ୍ତି କରାଯାଏ ତାହାକୁ ସାତ୍ତ୍ୱିକୀ ଭକ୍ତି କୁହାଯାଏ ।

ମାନହାଟନ୍ ପ୍ରୋଜେକ୍ଟ ପକ୍ଷରୁ ଯେତେବେଳେ ପ୍ରଫେସର ରବର୍ଟ ଓ ପେନ ହାଇମର ବିଶ୍ୱର ପ୍ରଥମ ଆଣବିକ ବୋମା ନେଭେଡ଼ା ମରୁଭୂମିରେ ପରୀକ୍ଷା କରୁଥିଲେ, ସେତେବେଳେ ସେ ଭଗବତ ଗୀତା ପାଠ କରୁଥିଲେ । ତାଙ୍କୁ ଯେତେବେଳେ ପ୍ରଶ୍ନ କରାଗଲା, ''ଆଣବିକ ବୋମା ପରୀକ୍ଷା କରୁଥିବା ସମୟରେ ଆପଣ କାହିଁକି ହିନ୍ଦୁ ଧର୍ମଶାସ୍ତ୍ର ଭଗବତ୍ ଗୀତା ପଠନ କରୁଥିଲେ ?'' ତାହାର ଉତ୍ତରରେ ସେହି ପରମଶାସ୍ତ୍ରର ଏକ ଶ୍ଳୋକ ସେ ଉଦ୍ଧାର କରି ଆବୃତ୍ତି କରିଥିଲେ ''ଦିବି ସୂର୍ଯ୍ୟସହସ୍ରସ୍ୟ ଭବେଦ୍ୟୁଗପଦୁତ୍ଥିତା/ଯଦି ଭାଃ ସଦୃଶୀ ସା ସ୍ୟାଭାସସ୍ତସ୍ୟ ମହାତ୍ମନଃ ।'' ଅର୍ଥାତ୍ ଆକାଶରେ ଯଦି ଏକ ସମୟରେ ସହସ୍ର ସୂର୍ଯ୍ୟ ଉଦୟ ହୁଅନ୍ତି, ତେବେ ସେଥିରୁ ଯେଉଁ ଜ୍ୟୋତି ନିର୍ଗତ ହେବ, ସେହି ଜ୍ୟୋତିରେ ମହାନ୍ ପୁରୁଷଙ୍କ ଜ୍ୟୋତି ସହିତ ସମାନ ହେବ ନାହିଁ । ଏଥିରେ ସନ୍ଦେହ ନାହିଁ । ଚିକାଗୋ 'ବିଶ୍ୱଧର୍ମ ସମ୍ମିଳନୀ' ଅବସରରେ ସ୍ୱାମୀ ବିବେକାନନ୍ଦ ଭଗବାନ ଶ୍ରୀକୃଷ୍ଣଙ୍କର ଗୀତାବାଣୀ ଉଦ୍ଧାର କରି କହିଥିଲେ, ''ଯିଏ ମୋ ପାଖକୁ ଯେଉଁ ରୂପରେ ଆସୁନା କାହିଁକି, ମୁଁ ତା' ପାଖରେ ପହଞ୍ଚିବି । ସମସ୍ତ ମଣିଷ ନିଜ ନିଜ ମାର୍ଗରେ ସଂଘର୍ଷରତ ଏବଂ ସମସ୍ତ ମାର୍ଗର ଅନ୍ତ ମୋ ନିକଟରେ ।

ଉତ୍କଳୀୟ ସଂସ୍କୃତିର ଅନ୍ୟ ନାମ ଜଗନ୍ନାଥ ସଂସ୍କୃତି । ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପାଇଁ ଭଗବତ୍ ଗୀତା କେତେ ପ୍ରିୟତମ ଗ୍ରନ୍ଥ, ତାହାର ପ୍ରମାଣ ଦାର୍ଢ୍ୟତା ଭକ୍ତିରେ ବର୍ଣ୍ଣିତ ଗୀତା ପଣ୍ଡା ଉପାଖ୍ୟାନରୁ ଉପଲବ୍ଧ ହୁଏ । ଗୀତା ପଣ୍ଡାଙ୍କର ପରିବାରକୁ କ୍ଷୁଧାରୁ ମୁକ୍ତି ପାଇଁ ପ୍ରଭୁ ଶ୍ରୀଜଗନ୍ନାଥ କୈବଲ୍ୟ ଭାର ନିଜ କାନ୍ଧରେ ଆଣି ଯୋଗାଇ ଦେଇଥିବା ବିଷୟ ଏଥିରେ ଅଭିବ୍ୟକ୍ତ ହୋଇଛି ।

ସଂପ୍ରତି ସମାଜର ବାତାବରଣ ଏତେ ତୀବ୍ର ଭାବରେ କଳୁଷିତ ଯେ, ଆମର ଅନ୍ତରାତ୍ମା ସହିତ ଦିନେ ସଂପର୍କ ଥିଲା ବୋଲି ହୃଦ୍‌ବୋଧ ହେବା ସମ୍ଭବ ହେଉନି । ଭାରତୀୟ ସଂସ୍କୃତି ଓ ଐତିହ୍ୟରେ କେତେ ଦିଗ୍‌ଦର୍ଶନ ଥିଲା, ଈଶ୍ୱରଙ୍କୁ, ନିଜକୁ ଓ ସତ୍ୟକୁ ଜାଣିବାପାଇଁ କେତେ ଅଦମ୍ୟ ପିପାସା ଥିଲା, ତାହାର ଦୃଷ୍ଟାନ୍ତ ଅନ୍ୟ କୌଣସି ସଭ୍ୟତାରେ ଦୃଷ୍ଟିଗୋଚର ହୁଏ ନାହିଁ । ସୁତରାଂ ଏହି ସମୃଦ୍ଧ ସଂସ୍କୃତି ଓ ପରଂପରାର ତାତ୍ପର୍ଯ୍ୟକୁ ବୁଝିବାକୁ ଚେଷ୍ଟିତ ହେବା ସର୍ବାଦୌ ପ୍ରୟୋଜନ ।

---

ପୂର୍ବତନ ଅଧକ୍ଷ–ଆନନ୍ଦପୁର ମହାବିଦ୍ୟାଳୟ
ସିନେମାହଲ୍ ଛକ, ପୋଷ୍ଟ – ଫକୀରପୁର
ଜିଲ୍ଲା – କେନ୍ଦୁଝର, ପିନ୍ – ୭୫୮୦୨୧

# ଲୋକନୃତ୍ୟ ପରମ୍ପରାରେ ଯାଜପୁରର ଘୋଡ଼ାନାଚ

ଦାମୋଦର ବେହେରା

ପ୍ରକାଶ ଥାଉକି, ଲୋକକଳା ଲୋକନୃତ୍ୟର ପରମ୍ପରାକୁ ଉଜ୍ଜୀବିତ ରଖିବାରେ ଓଡ଼ିଶାର ଜନମାନସ ବେଶ୍ ସଚେତନ ଓ ଆଗ୍ରହୀ ଅଟନ୍ତି । ସମୟ ସ୍ରୋତରେ କିଛି କିଛି ଲୋକକଳା ଲୋକନୃତ୍ୟ ଅପଭ୍ରଂଶ ବା ପରିବର୍ତ୍ତନର ଦ୍ୱାରସ୍ଥ ହୋଇଥିଲେ ମଧ୍ୟ ଏବେବି ଲୋକ ଭାବନାରେ ସ୍ୱତନ୍ତ୍ର ରେଖାପାତ କରି ବେଶ୍ ଚଳଚଞ୍ଚଳ ହୋଇଉଠିଥିବାର ଜଣାଯାଏ । ଏହି ପରିପ୍ରେକ୍ଷୀରେ ଓଡ଼ିଶାର ଉପକୂଳ ଅଞ୍ଚଳରେ ପାଳିତ ହେଉଥିବା ଚଇତି ଘୋଡାନାଚ ସମ୍ପର୍କରେ ଆଲୋକପାତ କରାଯାଇପାରେ । ତୀର୍ଥରାଜ ବିରଜା କ୍ଷେତ୍ର ଯାଜପୁରର କୈବର୍ତ୍ତ ସମ୍ପ୍ରଦାୟ ଆଜକୁ ଦୀର୍ଘ ବର୍ଷଧରି ପାଳନ କରିଆସୁଥିବା ଏଇ ସ୍ମରଣୀୟ ଚଇତି ଘୋଡାନାଚଟି ଏ ଅଞ୍ଚଳରେ ଏକ ବିଶେଷ ପର୍ବ ଭାବରେ ତା'ର ସ୍ୱତନ୍ତ୍ରତା ବଜାୟ ରଖିଛି । ଏହି ଚଇତିଘୋଡା ନାଚକୁ ସେମାନେ ତାଙ୍କର ବାର୍ଷିକ ଉତ୍ସବ ଭାବରେ ମଧ୍ୟ ପାଳନ କରିଥାନ୍ତି । ମା' ବାସୁଳି ଠାକୁରାଣୀଙ୍କୁ ଅଧିଷ୍ଠାତ୍ରୀ ଦେବୀରୂପେ ବିଶେଷ ମାନ୍ୟତା ଦେଇ ତାଙ୍କୁ ଶକ୍ତି ରୂପରେ ଅର୍ଚ୍ଚନା ଓ ପୂଜା କରିବା ଏହି ଲୋକନୃତ୍ୟର ମୁଖ୍ୟ ଲକ୍ଷ୍ୟ ଅଟେ । ଷୋଡଶ ଶତାବ୍ଦୀର ପଞ୍ଚସଖା ଯୁଗୀୟ କବି ତଥା ମାଳିକା ରଚୟିତା ସାଧକ ଅଚ୍ୟୁତାନନ୍ଦ ଦାସ ଏହି ସମ୍ପ୍ରଦାୟ ପାଇଁ ରଚନା କରିଯାଇଛନ୍ତି 'କୈବର୍ତ୍ତ ପୁରାଣ' । ଏହି ପୁସ୍ତକରେ ଆମ ସାମାଜିକ, ଆଧ୍ୟାତ୍ମିକ, ପୌରାଣିକ ଚେତନାର ବିଶେଷ ବିବରଣୀ ଗୀତ ଆକାରରେ ଲିପିବଦ୍ଧ ହୋଇଛି । କୁହାଯାଏ, ବରୁଣ ରାଜା ବା ଭଗବାନ ବିଷ୍ଣୁ କୈବର୍ତ୍ତମାନଙ୍କୁ ଅର୍ଥାତ୍ ସେମାନଙ୍କ ସମ୍ପ୍ରଦାୟର ସେ ସମୟର ମୁଖ୍ୟ ଦାସରାଜାଙ୍କୁ ଏହି ଘୋଟକକୁ ଉପହାର ଦେଇଥିଲେ । ମନରେ ପ୍ରଶ୍ନ ଉଠେ– ଏହି ଦାସରାଜା ଭଗବାନ ବିଷ୍ଣୁଙ୍କଠାରୁ ଘୋଡା ବ୍ୟତିରେକେ ଅନ୍ୟପ୍ରାଣୀ ଉପହାର ପ୍ରାପ୍ତି ନହେବାର କାରଣ କ'ଣ ଥିଲା । ସେମାନେ କୁହନ୍ତି ଘୋଡା ହେଉଛି ସାହସ, ଶକ୍ତି, ଦକ୍ଷତା, ନିର୍ଭୀକତା ତଥା ସଫଳତାର ପ୍ରତୀକ । ବୃତ୍ତି ଏ ମୋ ପୋଷେ କୁଟୁମ୍ବ ନ୍ୟାୟରେ ନଦୀବକ୍ଷରେ ନାବଚାଳନା କରି କୈବର୍ତ୍ତମାନେ ଯାତ୍ରୀମାନଙ୍କୁ ଏ କୂଳରୁ ସେ କୂଳକୁ ଝଡବାତ୍ୟା, ବନ୍ୟାବିପ୍ୱାତକୁ ବେଖାତିର କରି ପାର୍ କରାଇବା କେବେ ସାଧାରଣ କଥା ନଥିଲା । ତେଣୁ ଘୋଡାଟି ହେଉଛି ସ୍ୱୟଂ ବାସୁଳି ଠାକୁରାଣୀ, ଯାହା ଭଗବାନ ବିଷ୍ଣୁଙ୍କ ଦ୍ୱାରା ସେମାନେ କେଉଁ ଯୁଗରୁ ପ୍ରାପ୍ତ ହୋଇଥିଲେ ।

ଏଠାରେ ପ୍ରକାଶ ଥାଉକି, କଥା, କିମ୍ବଦନ୍ତୀ, ପୌରାଣିକତା ସହିତ ଆଧୁନିକତାର ପାଦ ମିଳାଇ ବର୍ତ୍ତମାନ ଯାଜପୁରର ନିଆରି (ରାଢ଼ି) ଓ କୈବର୍ତ୍ତ ସମ୍ପ୍ରଦାୟଙ୍କ ମଧ୍ୟରେ ଅନୁଷ୍ଠିତ ଘୋଡାନାଚର ରୂପରେଖ ସମ୍ପର୍କରେ ଆଲୋଚନା କଲେ ଜଣାଯାଏ ପ୍ରତିବର୍ଷ ଚୈତ୍ର ପୂର୍ଣ୍ଣିମାଦିନ ଏହି ପୂଜାଟି ଆରମ୍ଭ ହୋଇ ତିନିଦିନ ଧରି ପରିଚାଳିତ ହୋଇଥାଏ । କୈବର୍ତ୍ତ ପରିବାର ଅତି ଆଗ୍ରହ, ଆନନ୍ଦ ଓ ନିଷ୍ଠାର ସହିତ ଏହି ପୂଜାର ଆୟୋଜନ କରିଥାନ୍ତି । ଘରଦ୍ୱାର ଲିପାପୋଛା ହୁଏ, ସମସ୍ତେ ନବବସ୍ତ୍ର ପରିଧାନ କରନ୍ତି, ଘରେ ଆମିଷ ନିଷେଧ କରାଯାଏ । କୈବର୍ତ୍ତମାନେ ଘରେ ଯେଉଁ ପୂଜା ବସାନ୍ତି, ତା'ର ଏକ ନୀତି ନିୟମ ବିଧି ଅଛି । ପ୍ରଥମେ

ସେମାନେ ନଦୀପଠାରୁ ଶୁଦ୍ଧ ମାଟି ସଂଗ୍ରହ କରି ସେଥିରେ ତିନିଟା ଘୋଡା ନିର୍ମାଣ କରନ୍ତି । ଏହି ଘୋଡାର ପିଠିରେ ମାଟିରେ ତିଆରି କରି ବସାନ୍ତି ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କୁ । ଏହାଛଡା ମାଟିରେ ମତ୍ସ୍ୟ, କଚ୍ଛପ, କୁମ୍ଭୀର, ବୃଶ୍ଚିକ, ନାଗନାଗୁଣୀ, ନାବ ଓ କାତ ନିର୍ମାଣ କରି ଜାଲ ତଥା ବ୍ୟବସାୟ ସରଂଜାମକୁ ସେଠାରେ ସ୍ଥାପନ କରି ନୀତିନିୟମ ବିଧି ଅନୁସାରେ ନିଜେ ନିଜେ ପୂଜା କରନ୍ତି । ଏଥିପାଇଁ କେବେ ବ୍ରାହ୍ମଣ ପୂଜକ ଆବଶ୍ୟକ ହୁଅନ୍ତି ନାହିଁ । ପୂଜାବେଦୀ ନିକଟରେ ସ୍ୱାଦିଷ୍ଟ ପଣା, ଛେନା, ଚକୁଳିପିଠା ଓ ଗଜକ ତରକାରୀ ଭୋଗ ଲଗାଯାଏ । ଘରେ ଘରେ ଖେଳିଯାଏ ଆନନ୍ଦର ଲହରୀ । ଏହି ସମୟରେ ମାଛଧରା ଜାଲ, ନୌକା ଇତ୍ୟାଦି ସେମାନଙ୍କ କୌଳିକ ସରଂଜାମମାନ ନିଷ୍ଠାର ସହିତ ପୂଜାବେଦୀ ପାଖରେ ରଖାଯାଏ । ପରିବାର ଓ ଗାଁର ଆବାଳବୃଦ୍ଧବନିତା ଆନନ୍ଦ ମୁଖର ହୋଇ ଏହି ତିନିଦିନକୁ ପାଳନ କରିଥାନ୍ତି । ଚୈତ୍ର ପୂର୍ଣ୍ଣିମାଠାରୁ ଆରମ୍ଭ ହୋଇ ତିନିଦିନର ଶେଷ ତିଥିଟି ଜାକଜମକରେ ପାଳନ କରାଯାଏ । ସେଦିନ ହୁଏ ଘୋଡା ମେଳନ । ଯାଜପୁରର ବୈତରଣୀ ନଦୀ ତୀରବର୍ତ୍ତୀ ଦଶାଶ୍ୱମେଧ ଘାଟ ସଂଲଗ୍ନ ବାରୁଣୀ ପଡିଆରେ ଏହି ଘୋଡାନାଚ ବା ଘୋଡା ମେଳନ ଅନୁଷ୍ଠିତ ହୁଏ । ଶୁଣାଯାଏ, ବାଇଶି ମହାଲି ଅର୍ଥାତ୍ ବାଇଶିଟି ଜାଗାରୁ ଏହି ଘୋଡା ମେଳନରେ ଯୋଗଦେବା ପାଇଁ ଘୋଡାସବୁ ଆସେ । ମହାଆନନ୍ଦ କଳରୋଳ ମଧ୍ୟରେ ହଜାର ହଜାର ଜନସାଧାରଣ ପବିତ୍ର ବୈତରଣୀ ତୀରବର୍ତ୍ତୀ ବାରୁଣୀକ୍ଷେତ୍ରରେ ଏକତ୍ର ହୋଇ ଏହି ଲୋକ ମହୋତ୍ସବକୁ ଆନନ୍ଦରେ ଉପଭୋଗ କରନ୍ତି । ଯାଜପୁର ଜିଲ୍ଲା ପ୍ରଶାସନ ତରଫରୁ ଏକ ଉତ୍ତମ ପଣା ଆଟିକା ଏହି ଘୋଡାନାଚର ପୂଜାପୀଠକୁ ଆସେ । ଘୋଡାର ମୁଖକୁ ବାଦ୍‌ଦେଇ ଘୋଡାର ଶରୀରଟି ସମ୍ପୂର୍ଣ୍ଣ ଉପଯୁକ୍ତ ବାଉଁଶ ଦ୍ୱାରା ନିର୍ମାଣ ହୋଇଥାଏ । ବାଉଁଶଗଛ ମୂଳରେ ଭୋଗଦେଇ ତାହାକୁ ଆବାହନ କରାଯାଇ ସେଥିରୁ ବତା ଚିରି ଘୋଡାର ଶରୀର ନିର୍ମାଣ କରାଯାଏ । ତା' ଉପରେ ସୁନ୍ଦର ଓ ଚମତ୍କାର ଦିଶିବା ପରି ରଙ୍ଗବେରଙ୍ଗର କପଡାର ଝାଲେରୀ ଦେଇ ଘୋଡାଗୁଡିକର ପୋଷାକ ନିର୍ମାଣ କରାଯାଏ । ଜଣେ ଦକ୍ଷ ନଚାଳି ଘୋଡା ଭିତରେ ପ୍ରବେଶ କରି ବହୁ ମନୋମୁଗ୍ଧକର ଗୀତ ଗାଇ ଘୋଡାକୁ ନଚାନ୍ତି । କୈବର୍ତ୍ତମାନେ ଏକ ଶୋଭାଯାତ୍ରାରେ ନାନାପ୍ରକାର ବାଦ୍ୟର ମାଦକତା ସହ ମନମତାଣିଆ ବାକ୍‌ପଟୁତା ପରିବେଷଣ କରି ସଂଗୀତ ଓ ହାସ୍ୟରସ ପ୍ରୟୋଗରେ ଝୁମି ଝୁମି ନାଚ କରନ୍ତି । ସେ ବେଳର ପରିବେଶଟି ଖୁବ୍ ଚମତ୍କାର ଲାଗେ । ବେଳେବେଳେ ନାଚରେ ନାଚରେ ରାଉତ ରାଉତାଣୀ କଥା କଟାକଟି ହୁଅନ୍ତି । ଉଦାହରଣ–

ବାଟରେ ମାଇଲି ବୋଡା
ରାତିରେ ନଚାଏ ଚଇତି ଘୋଡା
ମୁଁ ଦିନରେ କୁଟଇ ଚୁଡା... ।

ଚଇତି ନାଚରେ ସାମିଲ ହୋଇଥାନ୍ତି ରାଉତ–ରାଉତାଣୀ । ତିନିଜଣ ନର୍ତ୍ତକ, ଯୋଡିନାଗରା ବଜାଳି, ଜଣେ ଢୋଲ ଆଉ ଜଣେ ମହୁରୀ ବଜାଳି ଥାଏ । ଏହି ଚଇତି ଗୀତରେ କୈବର୍ତ୍ତ ସଂପ୍ରଦାୟର କେତେ ଗ୍ରାମ୍ୟ ଜୀବନଧାରାର ଛବି, ସୁଖ ଦୁଃଖ, ଠାକୁରାଣୀଙ୍କୁ ଦୟିନୀର ଚିତ୍ର ରୂପ ପାଇଥାଏ । ଏହି ଚଇତି ଘୋଡାନାଚଟି ସଂସ୍କୃତି ଓ ପରମ୍ପରା ପ୍ରେମୀ ଯାଜପୁରବାସୀଙ୍କ ଭାବାବେଗ ଉପରେ ବେଶ୍ ସୁନ୍ଦର ପ୍ରଭାବ ପକାଇଥାଏ ।

ବାସ୍ତବରେ ଆଜି ଆମ ଲୋକମାନସରେ ଆଧୁନିକତାର ତୀବ୍ର ପ୍ରଭାବ ସତ୍ତ୍ୱେ ଓଡ଼ିଶାର ଲୋକକଳା ଲୋକନୃତ୍ୟ ଅକ୍ଷୁଣ୍ଣ ରହିଛି । ସ୍ଥାନ ବିଶେଷରେ ଏହାର ଦୃଶ୍ୟ ପରିବର୍ତ୍ତିତ ହେଉଥିଲେ ମଧ୍ୟ ଯାଜପୁରର ଘୋଡାନାଚ ଆମ ପାଇଁ ଏକ ସ୍ମରଣୀୟ ପ୍ରସଂଗ ହୋଇ ରହିବ– ଏଥିରେ ସଂଦେହ ନାହିଁ ।

ଯୁଣଭଦ୍ରା ମହାବିଦ୍ୟାଳୟ
ବିତନା, ପ୍ରୀତିପୁର
ଜିଲ୍ଲା– ଯାଜପୁର–୭୫୫୦୧୩